ପ୍ରଣେତା ଶ୍ରୀ ରମେଶ ବଳିୟାର ସିଂହ

# ଦଣ୍ଡନାଚ ଗୀତ



ଧର୍ମଗ୍ରନ୍ଥ ଷ୍ଟୋର

# ଦଣ୍ଡନାଟ ଗୀତ

(ପ୍ରଥମ ଭାଗ)



ପ୍ରକାଶକ ଓ ପ୍ରାପ୍ତିସ୍ଥାନ :

**ଧର୍ମଗ୍ରନ୍ଥ ଷ୍ଟୋର**

ପରିଚାଳକ : ଶ୍ରୀ ବିଦ୍ୟାଧର ସାହୁ

ଅଲିଶାବଜାର, କଟକ-୨, ଫୋନ: ୨୫୦୮୨୯୬

ମୂଲ୍ୟ : ୧୦ ଟଙ୍କା ମାତ୍ର

# ଦଣ୍ଡନାଟ ଗୀତ

## (ପ୍ରଥମ ଭାଗ)



ଲେଖକ : **ଶ୍ରୀ ରମେଶ ବଳୀୟାର ସିଂହ**
ସା: ଶ୍ରୀକୃଷ୍ଣପୁର, ପୋ: ବାଉଁଶଗଡ଼
ଭା: ରଣପୁର, ଜି: ନୟାଗଡ଼ (୭୫୨୦୨୬)



ପ୍ରଥମ ସଂସ୍କରଣ : ୨୦୦୧
୨ୟ ସଂସ୍କରଣ : ୨୦୦୭
ନୂତନ ମୁଦ୍ରଣ : ୨୦୧୧
ପ୍ରକାଶକ ଓ ପ୍ରାପ୍ତିସ୍ଥାନ : **ଧର୍ମଗ୍ରନ୍ଥ ଷ୍ଟୋର**
ପରିଚାଳକ : **ଶ୍ରୀ ବିଦ୍ୟାଧର ସାହୁ**
ଅଲିଶାବଜାର, କଟକ- ୭୫୩ ୦୦୨
ଫୋ : ୨୫୦୮୨୯୬



**ମୂଲ୍ୟ : ୧୦ ଟଙ୍କା ମାତ୍ର**

# ଦୁଇପଦ

ଓଡ଼ିଶାର ପ୍ରାଚୀନତମ ସଂସ୍କୃତି ମଧ୍ୟରେ ଦଣ୍ଡନାଟ ବା ଝାମୁଯାତ୍ରା ଅନ୍ୟତମ । ଦେବ ଦେବ ମହାଦେବ ହେଉଛନ୍ତି ଏହି ଯାତ୍ରାର ଆରାଧ୍ୟ ଦେବତା । ଅତ୍ୟନ୍ତ ନିଷ୍ଠାରସହ ଭକ୍ତମାନେ ନିଜର କାମନା ସିଦ୍ଧି ପାଇଁ ଏହି ବ୍ରତ ପାଳନ କରିଥାନ୍ତି । ବହୁ ପୁରାତନ କବି ଏ ଯାତ୍ରା ଉପରେ ପଦ୍ୟାବଳୀ ରଚନା କରି ଯାଇଛନ୍ତି । ଯେଉଁମାନଙ୍କର ଉତ୍ସାହରେ ମୁଁ ଏହି ଦଣ୍ଡନାଟ ଗୀତ ରଚନା କରିବାକୁ ଆଗଭର ହେଲି ସେମାନେ ହେଲେ ମୋର ବାଲ୍ୟବନ୍ଧୁ ଲୋକନାଥ ସାହୁ, ବାୟକ ଗୁରୁବାରୀ ସାମନ୍ତରା, ନାଟ୍ୟ ନିର୍ଦ୍ଦେଶକ ମହେଶ୍ୱର ଦଳେଇ, ଗୀତିକାର ବସନ୍ତ ମିଶ୍ର, କବି ଚନ୍ଦ୍ରମଣି ଦାସ, ଅକ୍ରୂର ବାରିକ, ବଟକୃଷ୍ଣ ବେହେରା, ନବକିଶୋର ସାହୁ (ଅଭିନେତା) ସୁବାସ ପ୍ରଧାନ, ଲକ୍ଷ୍ମଣ ପ୍ରଧାନ ଅନ୍ୟତମ । ସର୍ବୋପରି ଯାହାଙ୍କର ଉଦ୍ୟମରେ ଏ ପୁସ୍ତକ ଦିବାଲୋକ ଦେଖିପାରିଲା, ସେ ହେଉଛନ୍ତି ମିଷ୍ଟଭାଷୀ, ଧର୍ମପରାୟଣ, ପ୍ରାଚୀନ ସଂସ୍କୃତିର ଉଦ୍ଧାରକ ଶ୍ରୀଯୁକ୍ତ ବିଦ୍ୟାଧର ସାହୁ (ପରିଚାଳକ ଧର୍ମଗ୍ରନ୍ଥ ଷ୍ଟୋର) । ତାଙ୍କୁ ମୁଁ ଆନ୍ତରିକ କୃତଜ୍ଞତା ଜଣାଉଛି । ଆଶାକରେ ଏହା କଳା ପ୍ରେମୀଙ୍କୁ ଆନନ୍ଦ ଦେବା ସଂଗେ ସଂଗେ ମହାପ୍ରଭୁଙ୍କ କୃପା ଲାଭ ଦିଗରେ ସହାୟକ ହେବ ।

॥ ଇତି ॥

**ବିନୀତ ଲେଖକ**

# ଉତ୍ସର୍ଗ

ଜ୍ଞାନୀ, ମାନୀ, ସୁଗାୟକ ଯାହାଙ୍କର
ଆଦର୍ଶରେ ମୁଁ ଅନୁପ୍ରାଣିତ
ସେହି ପରମପୂଜ୍ୟ ଗୁରୁଦେବ ଲକ୍ଷ୍ମୀଧର ସାହୁ
(ବଳରାମପୁର)ଙ୍କର କରକମଳରେ ମୋର
ସୃଷ୍ଟିକୁ ସମର୍ପଣ କରି ଆଶୀର୍ବାଦ ଭିକ୍ଷା କରୁଛି ।

**ରମେଶ**

# ଦଣ୍ଡନାଟ ଗୀତ

## ବନ୍ଦନା

କାଳିକା ପରାଣଧନ, କରପତ୍ର ଯୋଡ଼ି କରେ ଜଣାଣ
କୃତିବାସ ବାରେ ମୋ ଠାରେ ହୁଅ ପ୍ରସନ୍ନ ।୧।
ଖଗ ମାରଇ ମୁଁ ନିତି  କ୍ଷମାକର ଦୋଷ କୈଳାସ ପତି
ଖଣ୍ଡ ପରଶୁ ହେ ! ଏତିକି ମୋର ବିନତି ।୨।
ଗଙ୍ଗାକୁ କଲ ଧାରଣ, ଗରଳକୁ ତୁମ୍ଭେ କରିଛ ପାନ
ଗଉରୀ ପତି ହେ ! ଦିଅ ବାରେ ଦରଶନ ।୩।
ଘରଣୀ ତୁମର କାଳୀ,  ଘର କରିଅଛ କୈଳାସପୁରୀ
ଘେନ ମୋ ଦଣ୍ଡିନୀ, ତ୍ରିଶୂଳ ଡମ୍ବରୁ ଧାରୀ ।୪।
ଉରେ ବିଭୁତି ଲେପନ, ଉପମା ଦେବାକୁ ନାହିଁ ମୋ ଜ୍ଞାନ
ଉମା ନାୟକ ହେ ! ଦିଅ ବାରେ ଦରଶନ ।୫।
ଚମ୍ପା ଗୟସର ହାର, ଚଇତ୍ର ମାସରେ ହୁଅ ବାହାର
ଚନ୍ଦ୍ରଶେଖର ହେ ! ତୋର ଭଗତା ସଙ୍ଗର ।୬।
ଛିନ୍ନ କଲ ପୁତ୍ରଶିର, ଛଟକେ ଗଜକୁ ଯୋଡ଼ିଲ ହର
ଛନ୍ଦ କାହିଁକି ହେ ! ମହାଦେବ ମହେଶ୍ୱର ।୭।
ଜଟା ଲମ୍ବିଛି ତଳକୁ, ଜପୁଛି ପ୍ରଭୁହେ ନିତି ତୁମକୁ
ଜଗତନାଥ ହେ ! ଦୁଃଖ କହିବି କାହାକୁ ।୮।
ଝଗଡା କରି ଭଗାରି, ଝୁଣନ୍ତି ସେ ଶିରୀ ଦିବାଶର୍ବରୀ
ଝଗଡ଼ି ହେଉଛି, ତୁମେକି ନଜାଣ ହରି ।୯।
ନୀଳକଣ୍ଠ ତ୍ରିପୁରାରୀ, ନନ୍ଦୀଭୃଙ୍ଗୀ ପରା ତୁମ ପ୍ରହରୀ
ନୀଳ ଲୋହିତ ହେ ! ମୋ ଦୁଃଖ ଦିଅ ନିବାରି ।୧୦।
ଟଙ୍କଧର ପଶୁପତି, ଟିକାଏ ଫେଡ଼ିଲ ନାହିଁ ଦୁର୍ଗତି
ଟାହି ପରିହାସ, କର୍ଣ୍ଣେ ଶୁଣୁଅଛି ନିତି ।୧୧।
ଠିକେ ରମେଶ ମାଗୁଣି, ଠକିଦିଅ ନାହିଁ ଅଜ୍ଞାନ ଜାଣି
ଠିକଣା ବେଳକୁ, ଲଗାଇ ଦେବ ତରଣୀ ।୧୨।

----X----

## (ଶିବ- ପାର୍ବତୀ ସମ୍ବାଦ)

ପାର୍ବତୀ-ବୋଲନ୍ତି ପାର୍ବତୀ ଆହେ ପ୍ରାଣପତି କରମୋ ବିନତିଘେନା
କୁହନ୍ତୁ ଝଟତି କପଟ ନରଖି ପୁଛଇ ମୁହିଁ ଅଧୀନା ପ୍ରେତଈଶ,
ଶୁଣିଲେ ହୋଇବି ତୋଷ ।୧।

ଶିବ- ହସି କାଶିବାସୀ ବୋଲନ୍ତିରେ ଶଶୀବଦନା ପରାଣ ପ୍ରିୟା
ଯେବେ ତୋର ଚିତ୍ତ ବଳିଅଛି ମୁଁ ତ ବୁଝାଇ କହିବି ତାହା
ପୁଛ ତୁହି, ସଂଶୟ ଫେଡ଼ିବି ମୁହିଁ ।୨।

ପା- କାମନା ମନ୍ଦିର ଦୀର୍ଘ କେତେହାତ କେତେଖମ୍ଭ କେତେଓରା
କିପତ୍ରେ ସେପୁର ଛାଉଣୀହୋଇଛି କେତୋଟି ସାଜଇଝରା
କାହିଁ ଦ୍ୱାର, କେତେ ଦିନରେ ତିଆର ।୩।

ଶି- କାମନା ମନ୍ଦିର ଦୀର୍ଘ ବାରହାତ ଷୋଳଖମ୍ଭ ଆଠଓରା
ଭୁଜପତ୍ରେ ସେତ ଛାଉଣୀ ହୋଇଛି ପଶ୍ଚିମେ ଦୁଆର ପରା,
ଛଅ ଝରା: ତିନିଶ ଦିନରେ ଗଢା ।୪।

ପା- କେତୋଟି ଗୁରୁଜ ଶୋଭା ପାଉଅଛି କିଏସେ ନିର୍ମାଣ କଲା
କି ମନ୍ତ୍ରରେ ତାହା ପ୍ରତିଷ୍ଠା ହୋଇଛି କଳସ କିଏ ଗଢ଼ିଲା
କଳସରେ, କିଏ ରହିଛି ବିଧିରେ ।୫।

ଶି- ତିନୋଟି ଗୁରୁଜ ଶୋଭା ପାଉଅଛି ମନ ବିନ୍ଧାଣି ଗଢ଼ିଲା
ହ୍ଲିଂ ମନ୍ତ୍ରେ ସେତ ପ୍ରତିଷ୍ଠା ହୋଇଛି କଳସ ତୋ କୃତିଥିଲା
ହୈମବନ୍ତୀ ! କଳସେ ଗଙ୍ଗା ରହନ୍ତି ।୬।

ପା- ପାଟବେତ ଯେଉଁ ନୟନେ ଦେଖଇ ଆଦ୍ୟରୁ ଆସିଲା କାହୁଁ
ମୋଟ ଲମ୍ଭ କେତେ ବୁଝାଅ ତୁରିତେ ପାଟଭଗତା ସେ କେହୁ
କହ ନାଥ ! ଶୁଣିବାକୁ ମୋର ଚିତ୍ତ ।୭।

ଶ- ତପକାଳେ ନେତ୍ରୁ ବହିଲା ମୋ ନୀର ତହିଁକ ବେତ ଜନମ
ମୋଟ ପାଞ୍ଚଧାନ ଲମ୍ବ ତିନିହାତ ଅଧେ ଅଟଇ
ପ୍ରମାଣ ଗିରିସୁତା, ଜନକ ପାଟ ଭଗତା ।୮।

ପା- ତେର ଭଗତାଙ୍କ ନାମ ଫେଡ଼ି କୁହ ମୋ ଆଗରେ ଭୋଳାସାଇଁ
କିଏ ବୀଣାକାର କହ ପ୍ରାଣେଶ୍ୱର ଆବର କହ ବୁଝାଇ
ବାନାମ୍ବର, ସାପୁଆ କେଉଁ ଜାତିର ।୯।

ଶି- କପିଳ ଯେ କବି କଣ୍ଠୁଶୁକହବି ଆଦିମୁକ୍ତ ପରାସର
ଏ ତେର ଭଗତା ମଧ୍ୟରେ ଗଣିତା କନ୍ଦର୍ପଟି ବୀଣାକାର
ବାମନେତ୍ରୀ, ସାପୁଆ ଜାଙ୍ଗଳ ଜାତି ।୧୦।

ପା- ଶୁଣି ମନତୋଷ ହେଲା ପ୍ରାଣଈଶ ଶ୍ରବଣ ମୋର ପବିତ୍ର
ତୁମ୍ଭ ଶ୍ରୀଚରଣ କରୁଛି ବନ୍ଦନ ଘେନ ମୋର ପଣିପାତ
ରମାଭାବି, କେବେ ଶିବଙ୍କୁ ଭେଟିବି ।୧୧।

----X----

# କେଳାଗୀତ

କେଳୁଣୀ : କିମ୍ପାଇ ହେଲା ଉଛୁର, କପଟ ନ ରଖି କହ ଆଗର
କେଳା କିରେ ! କଣ୍ଟକି ଗଲା ପାଶୋର ।୧।

କେଳା- ଖର୍ଚ୍ଚାନ୍ତ ଅନେକ ହେଲି, ଖାଡ଼ା ଉପବାସେ ବନେ ରହିଲି
କେଳୁଣୀ ଲୋ ! କ୍ଷୀଣ ଦିନୁଦିନ ହେଲି ।୨।

କେଳୁଣୀ - ଗର୍ଭଣା ସଂକ୍ରାନ୍ତି ଦିନ, ଗର୍ଭବାସ, ମୁହିଁ ହୋଇଲି ଜାଣ
କେଳା କିରେ ! ଗଣିଆ ଦେଲି ତା ନାମ ।୩।

କେଳା- ଘରେ ମୁଁ ନଥିଲି ସହି ଘଟାଇଲୁ ଏଡ଼େ କାଣ୍ଡ କିମ୍ପାଇ !
କେଳୁଣୀ ଲୋ ! ଘରବୁଡ଼ା କିଏ ସେହି ।୪।

କେଳୁଣୀ- ଅଜଣାତ ନାହିଁ ତୋତେ, ଉଭୟ ମିଳନ ହୋଇଲା ରାତ୍ରେ
କେଳା କିରେ ! ଉଡ଼ାଇ କହନା ମୋତେ ।୫।

କେ- ଚରିତ୍ର ଦେଲୁଣି ବିକି, ଚିହ୍ନିବାକୁ ତୋତେ ନାହିଁ ଲୋ ବାକି
କେଳୁଣୀ ଲୋ ! ଚେତିଲୁ ନାହିଁ କାହିଁକି ।୬।
କେଳୁଣୀ- ଛତରଖିଆ ମାଡୁଆ, ଛାରପୋକ ପରି ଲାଗିଛୁ କିଆଁ
କେଳା କିରେ ! ଛଟପଟ କରୁ ଯାହା ।୭।
କେଳା- ଯୋଗକୁ ଆସି ଜୁଟିଲୁ ଜହର ଖାଇଣ କିମ୍ପା ନମଲୁ
କେଲୁଣୀ ଲୋ ! ଜାୟାକୁ ଅଯୋଗ୍ୟ ହେଲୁ ।୮।
କେଳୁଣୀ- ଝଗଡ଼ା କରୁଛୁ ତୁତ, ଝିମିଟି ଖେଳରୁ ମହାଭାରତ
କେଳା କିରେ ! ଝିଅ ନୁହେଁ ଝୁଲ ମୁଁ ତ ।୯।
କେଳା- ନିର୍ଲଜ୍ଜୀ ନେଉଳି ମୁହିଁ, ନିନ୍ଦିତ ହୋଇଲେ ଜଗତେ ମୁହିଁ
କେଳୁଣୀ ଲୋ ! ନାଁ ପକାଇଲୁ ତୁହି ।୧୦।
କେଳୁଣୀ- ଟିପେଇଗୋଡ଼ିଆ ଭାଲୁ, ଟେକା ଖଣ୍ଡକୁ ତୁ ସରି ନ ହେଲୁ
କେଳା କିରେ ! ଟାଣ ପଣ ନ ଭାଙ୍ଗିଲୁ ।୧୧।
କେଳା- ଠାବ ଘରେ ଦେବି ନାହିଁ, ଠେଙ୍ଗୀହାଡ଼ ତୋର ଭାଙ୍ଗିବି ମୁହିଁ
କେଳୁଣୀ ଲୋ ! ଠିକେ ରମେଶ କହଇ ।୧୨।

----X----

# ଦଣ୍ଡ ଚରିତ

ଜୟ ଜୟ ଗଣନାଥ, ଗଜେନ୍ଦ୍ରବଦନ ଈଶ୍ୱର ସୁତ
ହେ ଗଣନାଥ ! ଗାଇବି ଦଣ୍ଡ ଚରିତ ।୧।
ଫେଡ଼ି କହୁଛି ବିଶେଷେ, ସତ୍ୟଯୁଗେ ଦଣ୍ଡ ଥିଲା କୈଳାସେ
ଶୁଣ ହରଷେ, ତୋଷ ହୋଇବ ଏ ରସେ ।୨।
ପୁଣି ତ୍ରେତୟାଯୁଗରେ, ଦଣ୍ଡ ପୂଜାହେଲା ସେତୁବନ୍ଧରେ
କପିଳାସରେ, ରହିଲା କଳିଯୁଗରେ ।୩।

ପଞ୍ଚାକ୍ଷରେ ପୂଜା ହେବ, ଶିବଙ୍କୁ ତୋଷିଲେ ଦଣ୍ଡ ପାଇବ
ପୂର୍ଣ୍ଣ ହୋଇବ, ମନୋବାଞ୍ଛା ଯାହାଥିବ ।୪।
ମନେଯାର ଭକ୍ତିଥିବ, ଗଭୀରଜଳରୁ ଦଣ୍ଡ ଲଭିବ
ସର୍ପ ଦେଖିବ, ଅନିଷ୍ଟେ ଯେ ନ କରିବ ।୫।
ହେଙ୍ଗୁଳା ନାମେ ଦେବତୀ, ଅଗ୍ନିରୂପେ ଯାଇ ଦଣ୍ଡେ ରହନ୍ତି
ଝୁଣା ଦିଅନ୍ତି, ବିଶ୍ୱାମିତ୍ର ମହାଯତି ।୬।
ଅପର୍ଣ୍ଣାଦେବୀ ସତ୍ୱର, ଷୋଳଖଣ୍ଡ ବାଦ୍ୟ କଲେ ବାହାର
ହେ ସୁଜ୍ଞନର, ଦେଲେ ଷୋଳସଖି କର ।୭।
ଷୋଳସଖି କଲେ ନୃତ୍ୟ, ଫୁଲଧନୁ ଧରି ଅପର୍ଣ୍ଣାମାତ
ହେଲେ ମୋହିତ, ନିରାକାରଙ୍କ ସଙ୍ଗତ ।୮।
କାଶୀରେ କନ୍ଦର୍ପ ଥିଲା, ମହାଦେବ ଅଙ୍ଗୁ ଜନ୍ମ ପାଇଲା
ବୀଣା ବାଇଲା, ବୀଣାକାର ନାମ ହେଲା ।୯।
କାରୁଆଣି ହେଲେ ରତି, ଧନୁରେ ବାନ୍ଧିଲେ ସପତଘଣ୍ଟି
ନୃତ୍ୟ କରନ୍ତି, କମ୍ପିଲା ଆକାଶ କ୍ଷିତି ।୧୦।
ଅସୁରଙ୍କ ଦର୍ପ ଦେଖି, ଦୁର୍ଗାଙ୍କୁ କହିଲେ ସେ ଅଷ୍ଟଆଖି
କରାଳମୁଖୀ, ପ୍ରଭାଙ୍କୁ ପୁଣି ପେଶନ୍ତି ।୧୧।
ପ୍ରଭା ତହୁଁ ଚଳିଗଲେ, ଅସୁର ବଧିଣ ରକ୍ତ ପିଇଲେ
ଯେହୁ ବଞ୍ଚିଲେ, ପ୍ରାଣଘେନି ପଳାଇଲେ ।୧୨।
ତେଣୁ ପ୍ରଭା ଦୁର୍ଗାଶକ୍ତି, ଯୋଗୀ ଯୋଗିଆଣୀ ଗୋରେଖ ସତୀ
ଜାଙ୍ଗଳଜାତି, ସାପୁଆକୁ ଯେ କହନ୍ତି ।୧୩।
ପରତେ ଯେବେ ନହୋଇ, ଶିବଚନ୍ଦ୍ରିକା ଯେ ଦେଖିବ ଯାଇ
ରମେଶ କହି, ଦୟାକର ଉମାସାଇଁ ।୧୪।

----X----

# ବୀଣାକାର ଗୀତ

ଜୟ ତ୍ରିପୁରାରୀ କୈଳାସ ବିହାରୀ ଉମା ମନୋହାରୀ ମହେଶ୍ୱର
ପ୍ରଭୁ ବାଘାମ୍ବର
ବିଭୂତି ମଣ୍ଡନ ବିପତ୍ତି ଖଣ୍ଡନ ଜଗତ ବନ୍ଦନ ଦୁଃଖହର
ପ୍ରଭୁ ଗଙ୍ଗାଧର
ବିଜେ କରିଅଛ ଗଉରୀ ବେତର
ତେର ଭଗତାଙ୍କୁ ଯେ ଘେନିଛ ଚନ୍ଦ୍ରଶେଖର ।୧।
ଜୟ ମା କାଳିକା ମନ୍ଦାର ମାଳିକା ଶଙ୍କର ସେବିକା କାତ୍ୟାୟନୀ
ମାତ ନାରାୟଣୀ
ସଙ୍କଟ ନାଶିନୀ ପଙ୍କଜ ହାସିନୀ ପର୍ବତ ବାସିନୀ ଯୋଗାସନୀ
ମାତ ତ୍ରିନୟନୀ
ବକ୍ରକୋଟେ ପୂଜା ପାଉଛୁ ଗିରିଜା
ଖାଉ ବଳିଭୋଜ ଯେ ବିଚିତ୍ର ତୋ ସିଂହଠାଣି ।୨।
ଆହେ ତେର ଭକ୍ତ ଘେନ ମୋ ଆରତ ମଣି ଶବ୍ଦ ମାତ୍ର ଦିଅ ଥରେ
ତୁମ୍ଭ ଶ୍ରୀମୁଖରେ
ପିନ୍ଧି କଷାବାସ ଦିଶୁଛ ସରସ ହରଙ୍କ ଆଶିଷ ତୁମ୍ଭ ପରେ
ଥାଉ ସଦାକାଳେ
ପିଣ୍ଡକୁ ଯାତନା ଦେଉଅଛ ସିନା
ପାଇବ ସୁଫଳ ଯେ ନମସ୍କାର ପାଦ ତଳେ ।୩।
ଏହି ଝାମୁଜାତ ଜଗତେ ବିଖ୍ୟାତ ମହାଦେବଙ୍କର ମହାଲୀଳା
ସେ ତ ଭାଙ୍ଗଭୋଳା
ଶିରେ ସୁଧାକର ଡମ୍ବରୁ ହସ୍ତର ସଂହାରନ୍ତି କ୍ଷଣକରେ ଲୀଳା
ସର୍ପ ସାଜେ ଗଳା
କହଇ ରମେଶ ପାଦପଦ୍ମେ ଆଶ
ତୁମ୍ଭ କୃପାବଳେ ଯେ ପଦ ହେଉ ମୋତେ ଦୃଶ୍ୟ ।୪।

----x----

# ଚଡ଼େୟା ଡାକ

ଗଜଗତି ଗମନା

କର ମୋହର ବିନୟ ଭାରତୀ ଘେନା ।୦।

ଆସ ମୋର କନକ ଗୋରୀ, ବିଚ୍ଛେଦରେ ଯାଉଛି ସରି

ଚାତକ ପରାୟ ଚାହିଁ ମୁଁ ବସିଛି

ନିଶ୍ଚୟ ଜୀବନ ଯିବ ତୋ ବିନା ।୧।

ହର ବରେ ପାଇଛି ତୋତେ, ହରବର ନକର ମୋତେ

ବନପତି ପତି ପତିଙ୍କ ଅରାତି

ଧୃତି ମୋ କ୍ଷଣକେ କରଇ ଚୂନା ।୨।

କମ୍ବୁକଣ୍ଠି ଶମ୍ଭୁ ଉରଜା, ବାର ବେନି ପୁରେ ତୁ ରଜା

ମୋ କୁଳଚନ୍ଦ୍ରମା ଦୋଷ କରି କ୍ଷମା

ପ୍ରୀତିଦାନ କର କ୍ଷିତି ମଣ୍ଡନା ।୩।

ବନ ଯିବି-ବନଜ ମୁଖୀ, ମନ ଥିବି ତୋ ଠାରେ ରଖି

ଡାକି ମଝା ଡାକି ଗଲିଣିରେ ଥକି

ରମା ବୋଲେ ଆସ ନବ ଯୌବନା ।୪।

----x----

# ଜଣାଣ

ପାର୍ବତୀ ପତି ମହେଶ, ହେ ଶମ୍ଭୁ କରିଛ କୈଳାସେ ବାସ

ବାସ ବ୍ୟାଘ୍ରଚର୍ମେ, ମୋହୁଛ ଭକ୍ତ ମାନସ ।୧।

ନସରଇ ମୋ କଷଣ, ଷଣ- ସ୍ୱନକାନ୍ତି ହେ ପଞ୍ଚାନନ

ପଞ୍ଚାନନ ଧ୍ୱଜାଘେନି କରୁଛ ଭ୍ରମଣ ।୨।

ମଣଇ ସଖା ସୋଦର, ଦରଶନ ଦିଅ ଗିରିଜାବର

ବର ଦେଲେ ଆଶା ପୂର୍ଣ୍ଣ ହୋଇବ ମୋହର ।୩।
ହରି ହର ମୋ ବିପତ୍ତି, ପତିତ ତାରଣ ଦିବ୍ୟ ମୂରତି
ରତି ପତି, ପର ନଜାଣେ ପୂଜା ଭଗତି ।୪।
ଗତିଦାତା ହେ ଶଙ୍କର, କର କୃପା ମୋତେ ଦୟା ସାଗର
ଗରଳ ଭକ୍ଷିଣ, ରଖିଲ ସାରା ସଂସାର ।୫।
ସାରସ ପଦ ଭରସା, ରମାପତି ଫେଡ଼ ମୋହର ଦଶା
ଦଶାର୍ଦ୍ଧ ବଦନ ଟାଳନା ରମେଶ ଆଶା ।୬।

----X----

## ଶବର ଗୀତ

ଶବର- କରନ୍ତେ ଡେରି ଶବରୀ କହେ ଶବର ଏପରି
କାହିଁ ଥିଲୁ ତୁହି ଦୋଚାରୀ ପରାୟ ବୁଲୁ ସାଇ ସାଇ ।୧।
ଶବରୀ- ଖୁଁ, ଖୁଁରେ ଖାସୁଆ ଖତୁଆ ମର୍କଟ ମୁହାଁ
ଖଟି ଖଟି ମୁହିଁ, ପଲ୍ୟଙ୍କ ଉପରେ ଯାଇଥିଲି ଶୋଇ ।୨।
ଶବର- ଗଣ୍ଡାଏ ବିଧାଏ ତୋର ଗୁଣ୍ଡ କରିଦେବି ହାଡ଼
ଗୁଣ୍ଡିପ୍ରାୟ ଦଳି, ପ୍ରାଣ ତୋର ନେବି କେତେ କରୁକଳି ।୩।
ଶବର- ଘଣ୍ଟିକାରେ ମାରିଦାନ୍ତ ଘଡ଼ିକେ ପିଇବି ରକ୍ତ
ଘୋଡ଼ାମୁହାଁ ଭେକା, ସରମ ତୋହର ମୁଖେନାହିଁ ଏକା ।୪।
ଶବର- ଉଠିଲେ ଆଣିବି ଝିଙ୍କି, ଉଚ୍ଚେ ନ ପାରିବୁ ଡାକି
ଉଜାଡ଼ିଲୁ ମୋତେ, ଉପକାରକରି ଲାଭନାହିଁ ତୋତେ ।୫।
ଶବରୀ- ଚିପିଣ ତୋହର ତଣ୍ଟି, ଚକ୍ରସମ ଦେବି ଛାଟି
ଚିହ୍ନିନାହୁଁ ମୋତେ,ସ୍ୱରୂପ ମୋହର ଦେଖାଇବି ତୋତେ ।୬।
ଶବର- ଛୁଇଁଲେ ହୋଇବି ଛୁଆଁ, ଛାଇ ତୁ ପକାଉ କିଆଁ
ଛାଡ଼ପତ୍ର ନେଇ ଗଲେ ତୁ କଳଙ୍କ ମୋର ଯିବ ଧୋଇ ।୭।
ଶବରୀ- ଜହ୍ନି ମଞ୍ଜି ଠାରୁ କଳା, ଜାତୁଧାନ ଜଳଜଳା
ଜଙ୍ଗଲିଆ ଭାଲୁ, ଜିଭକୁ କରୁଛୁ କେତେ ହାଲୁହାଲୁ ।୮।

ଶବର- ଝଟତି ମାନିଯା ଦୋଷ, ଝିଙ୍କାରି ଦେବି ମାଉଁସ
ଝାଙ୍କ ଛଡ଼ାଇବି, ଘୋରବନସ୍ତରେ କାଳ କଟାଇବି ।୯।

ଶବରୀ- ନୁଖୁରା ମଳିମୁଣ୍ଡିଆ, ନିପଟ କଳି କାଣ୍ଡୁଆ
ନିମ ପରି ପିତା, ଲାଗଇ ଶୁଣିଲେ ମୋତେ ତୋର କଥା ।୧୦।

ଶବର- ଟାଣ ଟାଣ କଥା କହି, ଟପିଗଲୁ ମୋତେ ସହି
ଟିକେ ହସିହସ, ଚିତ୍ତକୁ ମୋହର ଏବେ କର ତୋଷ ।୧୧।

ଶବରୀ- ଠିକେ ତୁ ମୋହର ପତି, ଠକିଲେ ପାଇବୁ ଶାସ୍ତି
ଠାକୁରଙ୍କୁ ଧ୍ୟାୟି, ରମେଶ ଏ ରସରେ ଭାବିଣ କହି ।୧୨।

----X----

# ପତ୍ରସଉରା ଗୀତ

ସଉରା - ଆହା ମୋ ଚନ୍ଦ୍ରମାମୁଖୀ
କର୍ଣ୍ଣେ ମୋର ଡାକ ଶୁଭୁ ନାହିଁକି
ବାରିଜାକ୍ଷୀ, ପ୍ରିୟସଖି, ହରଷ ହୁଅନ୍ତି ଦେଖି
ଡାକି ଡାକି ମୁଁ ଗଲିଣି ଥକି ରେ ପ୍ରିୟ ସଖି ।୧।

ସଉରୀ - ଯାଉଛି ହେ ପ୍ରାଣଧନ
ଗୃହର କଂଙ୍କାଳ ସାରି ବହନ
ବେଶଭୂଷଣ ହୋଇ ଅଙ୍ଗେଣ
ମୋର ମନ ହେଉଛି ଉଚ୍ଛନ୍ନ ହେ ପ୍ରାଣଧନ ।୨।

ସଉରା - ପଞ୍ଜୁରୀ ଭିତରେ ଶାରୀ,
ମଦନ ଅଙ୍ଗକୁ ଦେଉଛି ଘାରି
ବିଦ୍ୟାଧରୀ, ସୁନାଗୋରୀ,
ଥୟ ମୁଁ ହେବି କିପରି
ହୋଇ ବେଶ ତୁ ଆସ ମୋ ପାଶ ଲୋ ନାରୀଈଶ ।୩।

ସଉରୀ - ତୁମେ ତ ଯୁବା ପୁରୁଷ, କେମନ୍ତେ ଛାଡ଼ିଣ ଗଲ ବିଦେଶ
ମନ ବିରସ, ନିଶିଦିବସ
ଅଙ୍ଗ ଭୂଷଣ ମଣିଲି ବିଷ ହେ ପ୍ରାଣଈଶ ।୪।
ସଉରା-ଆସିବାରେ କଲି ହେଳା
ପାଦକୁ ଆଣିଛି ସୁବର୍ଣ୍ଣ ବଳା
ରତ୍ନଚୂଡ଼ିକି, କଟୀ ମେଖଳା ଲୋ ଗଳାମାଳା ।୫।
ସଉରୀ- ତ୍ରିସରି ମୁକ୍ତାମାଳ, କନକ ମୁଦ଼ିରେଶରଧା ମୋର
ନବ ନାଗର, ହେଲ ଅନ୍ତର
ଦୁଃଖ ବୁଝିଲେ ଗଉରୀ ହର ହେ ପ୍ରାଣେଶ୍ୱର ।୬।
ସଉରା- ସେ ଘେନି ନକର ମାନ
କୋଳେ ବସାଇଣ ଦିଅ ଚୁମ୍ବନ
ନାରୀ ରତନ, ବିନୟ ଘେନ
ବାରେ ହସି କହ ସୁବଚନ ଲୋ ପ୍ରେମଧନ ।୭।

----X----

## ପଞ୍ଚଦେବ ବନ୍ଦନା

ଜୟ ପଞ୍ଚଦେବ ପାଦତଳେ ତବ
ଢାଳଇ ଭକ୍ତି ପ୍ରଣତି
ଗଣେଶ ଶ୍ରୀପତି ଗିରୀଶ ପାର୍ବତୀ
ପ୍ରଭାକର ପଞ୍ଚମୂର୍ତ୍ତି ।୧।
ଆଦ୍ୟେ ଗଜାନନ ଗଉରୀ ନନ୍ଦନ
ଲମ୍ବୋଦର ବିନାୟକ
ମୂଷିକ ବାହନ ମୁକୁଟ ଧାରଣ
କୃପା ଲୋଚନରେ ଦେଖ ।୨।

ଦ୍ୱିତୀୟେ ଦୈତାରୀ ବୈକୁଣ୍ଠ ବିହାରୀ
ନାରାୟଣ ପୀତବାସ
ରାଧା ମନୋହାରୀ କେଶବ ଶ୍ରୀହରି
ଖଣ୍ଡନ କର କଳୁଷ ।୩।
ତୃତୀୟେ ବିନ୍ଦିଲି ତ୍ରିଲୋଚନ ପାଶେ
ଦେବ ଦେବ ମହାଦେବ
ପାର୍ବତୀ ରମଣ ତ୍ରିଶୂଳ ଧାରଣ
ତ୍ରିପୁରାରୀ ସଦାଶିବ ।୪।
ଚତୁର୍ଥେ ଚଣ୍ଡିକା ଅପର୍ଣ୍ଣା ଅମ୍ବିକା
ସର୍ବାଣି ସର୍ବମଙ୍ଗଳା
ଦୁଷ୍ଟ ବିନାଶିନୀ ବିକଟ ହାସିନୀ
ଉଦ୍ଧାର କର ମୋ ଭେଳା ।୫।
ପଞ୍ଚମେ ପୁଷଣ ଆଦିତ୍ୟ ଅରୁଣ
ତରଣୀ ମିତ୍ର ତପନ
ତମ ବିନାଶକ ଆଲୋକ ଦାୟକ
ଜଗତ ଜନ ବନ୍ଦନ ।୬।
ମୁହିଁ ଦୀନହୀନ ଅତି ଅକିଞ୍ଚନ
ହେ ପଞ୍ଚ ପରମେଶ୍ୱର
ଭାଷଇ ରମେଶ କ୍ଷମାକରି ଦୋଷ
କଂଝିତେ କରୁଣା କର ।୭।

----X----

# ସର୍ପ ଜନ୍ମ ବିବରଣ

କଶ୍ୟପ ଋଷିଙ୍କୁ ପୁଣ, ଧାତାକଲେ ତେର କନ୍ୟା ପ୍ରଦାନ
ବିବାହ କାର୍ଯ୍ୟ କଲେ ସମାପନ, ତ ପଦ୍ମ ଆସନ ।୧।

ରମଣୀ ସଙ୍ଗରେ ନିତି, ପ୍ରୀତି ଆରମ୍ଭିଲେ ସେ ମହାଯତି
କହୁଛି ଅପୂର୍ବ କଥା ଏ ଅତୀ, ଡେରିଥା ଶ୍ରୁତି ।୨।
କଦ୍ରୁ ନାମରେ ସୁମୁହିଁ, ବେଶେ ଦିନେ ପତି ପାଶେ ଚଳଇ
ସୁନ୍ଦର ବଳବନ୍ତ ସୁତ ପାଇଁ ତ, ଆତୁର ହୋଇ ।୩।
କାମ ଜାଗିବାରୁ ଅଙ୍ଗେ, ଜିହ୍ୱା ଲହ ଲହ କଲା ସେ ରଙ୍ଗେ
କଶ୍ୟପ ପାଶକୁ ଆସନ୍ତି, ବେଗେ ତ ଅତି ସରାଗେ ।୪।
ବୋଇଲେ ରେ ନାରୀବର, ରସନା ଯେପରି କଲୁ ତୋହର
ସେପରି ବୁଲାଉଥିବେ କୁମର, ତ ସତ୍ୟ ଏ ଗୀର ।୫।
ଯହୁଁ କଲେ କ୍ରୀଡ଼ାରଙ୍ଗ, ଜନମ ହୋଇଲେ ବହୁ ଭୁଜଙ୍ଗ
କର୍ଣ୍ଣରେ ଶୁଣ ସେହି, ଅଷ୍ଟ ନା ତ କହୁଛି ଆଗ ।୬
ଅନନ୍ତ ଆଉ ତକ୍ଷକ, କାଳୀୟ ଯେ ମହାପଦ୍ମ କୁଳିକ
ବାସୁକୀ, ଶଙ୍ଖପଦ୍ମ କର୍କୋଟକ, ତ ନାମଟି ତାଙ୍କ ।୭।
ଗୋଟି ଗୋଟି କରି ସବୁ, ଯାହା ବଖାଣିଲି ଶୁଣିଲୁ ବାବୁ
ରମେଶ ବୋଲେ ହାସ୍ୟ ନ କରିବୁ, ତ ପ୍ରଶଂସା ଦେବୁ ।୮।

----X----

# ରାମାୟଣ ଚରିତ

ଦିନେ କୈଳାସରେ ଅତି ହରଷରେ
ବସିଥିଲେ ହରଗୌରୀ,
କଥା ପ୍ରସଙ୍ଗରେ ପତିଙ୍କ ଆଗରେ
ପୁଚ୍ଛନ୍ତି ଗିରି କୁମାରୀ ।୧।
ଆହେ ପ୍ରାଣଧନ କୁହନ୍ତୁ ନିଦାନ
ରାମଙ୍କର ବନବାସ ।

କିମ୍ବା ଦଶରଥ କଲେ ଏ ସିଦ୍ଧାନ୍ତ
ଶୁଣିଲେ ହୋଇବି ତୋଷ ।୨।
ଶୁଣି ପଶୁପତି ଗୋଲରେ କହନ୍ତି
ତୋତେ କିବା ଅଗୋଚର
ତୋ ଶରଧା ଦେଖି ଆରେ ଚନ୍ଦ୍ରମୁଖୀ
କହୁଛି ଶୁଣ କର୍ଣ୍ଣର ।୩।
ମନ୍ତ୍ରୀମୁଖ ଚାହିଁ ଦଶରଥ କହି
ବୃଦ୍ଧକାଳ ଆସି ହେଲା
ଏହି ଅଯୋଧ୍ୟାର ଶାସନର ଭାର
କିଏ ତୁଲାଇବ ଭଲା ।୪।
କରିଛି ଭାବନ ସର୍ବଗୁଣେ ପୂର୍ଣ୍ଣ
ରାମକୁ କରିବି ରାଜା
ଯାଅ ମନ୍ତ୍ରୀବର କରାଅ ପ୍ରଚାର
ବଜାଅ ବିବିଧ ବାଜା ।୫।
ଶୁଣରେ ଭବାନୀ ମଣିହରା ଫଣୀ
ପରାୟ ମନ୍ଥରା ହେଲା ।
କୈକେୟୀର ପାଶ ହୋଇଲା ପ୍ରବେଶ
କର୍ଣ୍ଣେ ମନ୍ତ୍ର ଫୁଙ୍କିଦେଲା ।୬।
ରାମ ରାଜା ହେବ ତୋ ଟାଣ ଭାଙ୍ଗିବ
କଉଶଲ୍ୟା ରାଜମାତା
ନଉକର ପଣେ ରଖିବ ଚରଣେ
ଭରତ ପାଇଁ ମୋ ଚିନ୍ତା ।୭।
ମନ୍ଥରା ବଚନ କୈକେୟୀ ଶୁଣିଣ
ହେଲା ଅତି କୋପଭର

ମୋ ପୁଅ ଭରତ ହେବ ନରନାଥ
କହ ଲୋ କେଉଁ ପ୍ରକାର ।୮।
ମନ୍ଥରା ବୋଲଇ ତୋର ମନେ ନାହିଁ
ଦେବାସୁର ଯୁଦ୍ଧକାଳେ
ତୋ ସେବାରେ ତୋଷ ହୋଇ ନରଈଶ
ଦୁଇବର ଯାଚିଥିଲେ ।୯।
ମାଗ ଆଦ୍ୟବର ଭରତ ତୋହର
ଅଯୋଧ୍ୟାର ହେବ ରାଜା
ଦ୍ୱିତୀୟ ବରକୁ ହୋଇବ ରାମକୁ
ଚଉଦ ବରଷ ସଜା ।୧୦।
ରାଜା ତୋର ପୁରେ ବିଜେ ହେବା କାଳେ
ଉଚ୍ଚେ କରିବୁ କ୍ରନ୍ଦନ
ତୂଳିତଳ୍ପ ଛାଡ଼ି ଅଳଙ୍କାର କାଢ଼ି
ଥିବୁ ଭୂମିରେ ଶୟନ ।୧୧।
ଚାଟୁ କଥା ମାନ ଭାଷିଲେ ରାଜନ
କରାଇବୁ ସତ୍ୟବନ୍ଧ
ତହୁଁ ଦୁଇବର ମାଗିବୁ ସତ୍ୱର
ମେଣ୍ଟିବ ତୋ ମନସାଧ ।୧୨।
ଶୁଣରେ ଗଉରୀ ଠିକ ଠକ୍ କରି
କହୁଛି ତୋତେ ବୁଝାଇ
ଦଇବର ଯୋଗ ପଡ଼ିଲେ ଦୁର୍ଯ୍ୟୋଗ
କିଏ ପାରିବ ଏଡ଼ାଇ ।୧୩।
ସତ୍ୟବଳେ ଧରା ରହିଅଛି ପରା
ସତ୍ୟରେ ବହେ ପବନ ।

ସତ୍ୟେ ପ୍ରଭାକର ଉଦେ ଆକାଶର
ତାକୁ କେ କରିବ ଆନ । ୧୪।
କରି ସେହି ସତ୍ୟ ରାଜା ଦଶରଥ
ଦୁଇବର କଲେ ଦାନ ।
ଏ ବାରତା ଶୁଣି ରଘୁ କୁଳମଣି
ହୋଇଲେ ହରଷ ମନ ।୧୫।
ଜନକ ଦୁହିତା ଲକ୍ଷ୍ମଣଙ୍କ କଥା
ଭାଙ୍ଗି ନ ପାରିଲେ ସେ ତ
ନେବାକୁ ସଙ୍ଗତ କଲେ ସନମତ
ରାଘବ କୋଦଣ୍ଡ ହସ୍ତ ।୧୬।
ପିତାଙ୍କୁ ପ୍ରବୋଧି ସୂର୍ଯ୍ୟବଂଶ ନିଧି
ଚଳିଗଲେ ତେଜି ପୁର
ମାମୁଁ ଘରେ ଥିଲେ ଭରତ ଆସିଲେ
ମାତାଙ୍କୁ କଲେ ଧିକ୍କାର ।୧୭।
ଶୁଣରେ ଗଉରୀ ଭରତଙ୍କ ପରି
ଭାଇ ନାହିଁ ଏ ଜଗତେ
ଭାଇ ପାଇଁ ଭାଇ ସିନା କାନ୍ଦୁଥାଇ
ରମେଶ କହଇ ଗୀତେ ।୧୮।

----X----

## (ଚଢ଼େୟା ଚଢ଼େୟାଣୀ - କଳି)

ପୁ : କେତେ କରୁଛୁ ବଡ଼ାଇ, ଛଇଛଟକ ମୁଁ ଦେବି ଛଡ଼ାଇ
କି ଯୋଗେ, ତୋ ହାତ ଧରିଥିଲି ପୋଡ଼ାମୁହିଁ ।୧।

ସ୍ତ୍ରୀ: ଖୋଟିଆ ତୁ ଦରହସା, ଯମ ଦେଖୁନାହିଁ ଅଣ ପୁରୁଷା
ଖିଆଲ କଥାକୁ, କରୁଛୁ ଭଗାରି ହସା ।୨।

ପୁ: ଗେରସ୍ତ ବୋଲିଣ ମୋତେ, ଉପ୍ରୋଧ ନ କଲୁ ତୋହର ଚିତ୍ତେ
ଗାଳି ଦେଉଅଛୁ ସରମ ନ ଲାଗେ ତୋତେ ।୩।

ଝି : ଘମଣ୍ଡ ନ କର ଆଉ, ସହି ହେଉ ନାହିଁ ତୋହର ଦାଉ
ଘରୁ ବାହାରିଣ, ନିତିପ୍ରତି ବନେ ଥାଉ ।୪।

ପୁ: ଅପାଠୋଇ କଳିହୁଡ଼ି, ପକାଇବି ଦୂରେ ହାତକୁ ମୋଡ଼ି
ଅଣ୍ଡିରାଚଣ୍ଡୀ ଲୋ, ପ୍ରାଣ ଯିବ ପିଣ୍ଡୁ ଛାଡ଼ି ।୫।

ଝି: ଚଣ୍ଡାଳଠାରୁ ତୁ ହୀନ, ପରନାରୀଠାରେ ରଖିଲୁ ମନ
ଚଣ୍ଡୀଖିଆ, ତୋତେ ଦଇବ ହେଲାଣି ବାମ ।୬।

ପୁ: ଛାଡ଼ିଲି ତୋ ଠାରୁ ସ୍ନେହ, ଅଲକ୍ଷଣୀ ଆଉ ଦେଖାନା ମୁହଁ
ଛୁରୀ ମରାବାଣୀ, ବୋଲୁଛୁ ଜଳାଇ ଦେହ ।୭।

ଝି : ଜଣାଗଲା ତୋର ରୀତି, ହଟହଟା କରୁ ଦିବସ ରାତି
ଯୋଗିନୀଖିଆରେ, ପଡ଼ିଅଛୁ ମୋର କତି ।୮।

ପୁ: ଝାଟୁଆବେଣ୍ଟରେ ମାରି ବାପଘରେ ତୋତେ ଆସିବି ଛାଡ଼ି
ଝାଡ଼ୁବୁଲି ମୋତେ, ଦେଖାଉ କେତେ ଚାତୁରୀ ।୯।

ଝି: ନଳୀଗୋଡ଼ିଆ ତୁ, ପେଟା ଭୂମିରେ ପଡ଼ିବୁ ମାଇଲେ ଗୋଟା
ନାହିଁକିରେ ଲାଜ, ଯୁବତୀରେ କରୁ ଥଟ୍ଟା ।୧୦।

ପୁ: ଟେକି ପକାଇବି ଦୂରେ, ଅପବାଦ ବାଣୀ କହୁଛୁ ମୋରେ
ଟେକି ଉରଙ୍ଗା ଲୋ ମହତ ସାରୁ ସଭାରେ ।୧୧।

ଝି: ଠକ ତୁହି ପରପୋଷା, ଅକର୍ମା ହାତକୁ କଲି ଭରସା
ଠିକେ ରମା କହେ, ଉମାପତି ପଦେ ଆଶା ।୧୨।

----X----

## ଚଢ଼େୟା ବନ୍ଦନା

କନ୍ଦରପ ଦର୍ପହାରୀ, କାଶିବାସୀ କାଳକୂଟ ଆହାରୀ
ଶିବଶଙ୍କର, କରୁଛି ପାଦେ ଗୁହାରି ।୧।

ଖଳ ପ୍ରତାପ ନାଶିନୀ, ଖେଳାକରୁ ସାରା ବ୍ରହ୍ମାଣ୍ଡ ଘେନି
ଜୟ କାଳିକା, ଖଟନ୍ତି ପାଦେ ଯୋଗିନୀ ।୨।
ଗଜାନନ ତାତହର, ଗଙ୍ଗାଧର ମୋର କଷଣ ହର
ଶିବଶଙ୍କର, ଗଳାରେ ଭୁଜଙ୍ଗ ହାର ।୩।
ଘଟିଲା ତୋର ବଚନ, ଘୋର ବିପିନରେ ଗଲା ଜୀବନ
ଜୟ କାଳିକା, ଘଡ଼ିକରେ ଚେତା ଶୂନ୍ୟ ।୪।
ଉଦେ ହେଲେ ପ୍ରଜାପତି, ଉମାପତି ମୋର ଘେନ ବିନତି
ଶିବଶଙ୍କର, ଉଶ୍ବାସ କର ବିପତ୍ତି ।୫।
ଚାରିଦିନ କଷ୍ଟ ଦେଇ, ଚଳି ଆସିଥିଲି ବନକୁ ମୁହିଁ
ଜୟ କାଳିକା, ଚୈତନ୍ୟ ଫେରିଲା ନାହିଁ ।୬।
ଛନ୍ଦନଳ ଧରି ହାତେ, ଛାମୁରେ ଜଣାଣ କରୁଛି ଯେତେ
ଶିବଶଙ୍କର, ଛନ୍ଦ କାହିଁ ପାଇଁ ଏତେ ।୭।
ଜାତିରେ ମୁହିଁ ବଢ଼େୟା, ଯୋଗମାୟା ମୋତେ କର ସୁଦୟା
ଜୟ କାଳିକା, ଜଗତେ ନାମ ଅଭୟା ।୮।
ଝଲକଝାଇଁ ମୋ ରାଣୀ, ଝାଡ଼ବନେ ବୁଲି ହେଲେ ବାୟାଣୀ
ଶିବଶଙ୍କର, ଝରାଇ ନୟନୁ ପାଣି ।୯।
ନୀଳକଣ୍ଠ ବାମାକାଳୀ, ନରମୁଣ୍ଡ ଅସ୍ଥି ଗଳାରେ ମାଳୀ
ଜୟ କାଳିକା, ନମୋଃ ତୋ ପୟର ଡାଳି ।୧୦।
ଟଣକା ମୋହର ହର, ଟହକ ବଦନ ପାର୍ବତୀବର
ଶିବଶଙ୍କର, ଟିକାଏ କରୁଣା କର ।୧୧।
ଠିଆ ହୋଇ ଯୋଡ଼ି ପାଣି, ଠିକରେ ରମେଶ କରେ ଦୟିନୀ
ଜୟ କାଳିକା, ଠାକୁରାଣୀ କାତ୍ୟାୟନୀ ।୧୨।

----X----

# କୋଳିବିକା ଗୀତ

ଶବରୀ:- କୋଳି କେ ନେବ ଆସ ସହି ସଙ୍ଗାତ
ସଜ ତୋଳା କୋଳିରୁ ଆଣିଛି ମୁଁ ତ ଗୋ ଅତି ସୁଆଦ
ଥରେ ଚାଖିଲେ ଚିତ୍ତ ହୋଇବ ବୋଧ ଗୋ ।୧।
ଟୋକେଇ ପୂରିଅଛି କୋଳିରେ ମୋର
ବରକୋଳି ବଇଁଚ ବଉଳ ଖୀର ଗୋ ନାରଙ୍ଗ ବେତ
ତୋଳିବା ବେଳୁ ମୋର ବାସୁଛି ହାତ ।୨।
କଣ୍ଟେଇ ଖଣ୍ଡା କୋଳି ଜାମୁ ପିଜୁଳି
ସଜାଇ ରଖିଅଛି ଭଳିକି ଭଳି ଗୋ ହେଲା ଉଛୁର
ଯିବାକୁ ହେଉଅଛି ମୁଁ ତରତର ଗୋ ।୩।
ଶବର : ଏ ସମୟେ ଶବର ହେଲା ପ୍ରବେଶ
ଶବରୀକୁ ଦେଖିଣ ହୋଇଲା ତୋଷ ହେ କହଇ ହସି
କୋଳି ଦେବୁକି ମୋତେ ଷୋଳବୟସୀ ।୪।
ରୂପଟି ବିଶେ ତୋର ଅତି ସୁନ୍ଦର
କୋଳି ହୋଇ ନଥିବ କେଡ଼େ ମଧୁର ଲୋ ଆସିଛି ଧାଇଁ
ତୋ ହାତରୁ ଭୁଞ୍ଜିବି ଚନ୍ଦ୍ରମା ମୁହିଁ ଲୋ ।୫।
ଶବରୀ : ଏହା ଶୁଣି ଶବରୀ ହରଷ ହୋଇ
କୋଳିରୁ ଖୁଆଇଲା ଶବରେ ନେଇ ହେ ଶୁଣ ସୁଜନ ।
ରମେଶ ଏ ରସରେ କରେ ରଚନ ହେ ।୬।

----X----

# ଚିତାକୁଟା ଗୀତ

ଚିତା କୁଟାଇବ କିଏ ଆସ ପୁରନାରୀ
ହସ୍ତେ କୁଟିଦେବି ଚିତା ଅତି ଯତ୍ନ କରି ଗୋ
ଯାର ଶୋଭା, ଦେଖିଲେ ଝୁରି ହୋଇବେ ଯୁବା ଗୋ ।୧।

ଫୁଲ କୁଟିଦେବି ମୁହିଁ ବହୁ ପରକାର
ଜାଇଯୁଇ ହେନା ମଲ୍ଲୀ ଚମ୍ପା କନିଅର ଗୋ
ସୂର୍ଯ୍ୟମୁଖୀ, ଭ୍ରମର ଭ୍ରମ ହୋଇବେ ଦେଖି ଗୋ ।୨।
ଶୁକଶାରୀ ବସିଥିବେ ଏକମୁଖ ହୋଇ
କୋକିଳ ଯେ ଗାଉଥିବ ଚୂତ ଡାଳେ ରହି ଗୋ
ପାଦଛନ୍ଦି, କେକୀ ନାଚୁଥି ଟେକି ଚନ୍ଦ୍ରୀ ଗୋ ।୩।
ରାଣୀ ବସିଥିବେ ଯାଇ ରାଜାଙ୍କର ପାଶେ
ଚନ୍ଦ୍ର ଉଠି ଆସୁଥିବେ ନିର୍ମଳ ଆକାଶେ ଗୋ
ବୃନ୍ଦାବନେ, କୃଷ୍ଣ ସଙ୍ଗେ ଥିବେ ଗୋପୀମାନେ ଗୋ ।୪।
କୁଟିଲେ ହସ୍ତକୁ ଟିକେ ନ ହୋଇବ ବାଧା
ପୁଣି କୁଟିବାକୁ ଚିତା ବଳିବ ଶରଧା ଗୋ ଆସ ଆସ
ବୋଲେ ହୀନ ଅଜ୍ଞାନ ରମେଶ ଗୋ ।୫।

----X----

## ଜାନୁଘଣ୍ଟିଆ ରହସ୍ୟ

ଶୁଣ ଆହେ ସୁପଣ୍ଡିତ, ଜାନୁଘଣ୍ଟିଆର ପୂର୍ବ ଚରିତ
ଫେଡ଼ିଣ କହୁଛି ମନେ ହେବ ଆଚମ୍ବିତ ।୧।
ପର୍ଶୁରାମ ସାଥେ ରଣ, କରିଥିଲେ ପଥେ ଶ୍ରୀରଘୁରାଣ
ହାରି ପର୍ଶୁରାମ ଚରଣେ ଗଲା ଶରଣ ।୨।
ଏଥୁଅନ୍ତେ ସୀତାପତି, ପର୍ଶୁଠାରୁ କ୍ଷତ୍ରି କଳା ହରନ୍ତି
ତହୁଁବୀର ଗ୍ରାମେ ବୁଲିଣ ଭିକ୍ଷା କରନ୍ତି ।୩।
ପିନ୍ଧିଣ କଷାବସନ, ମସ୍ତକରେ ଜଟା ଭାଲେ ଚନ୍ଦନ
ହସ୍ତେ ଜପାମାଳୀ ମୁଖରେ ବେଦଗାୟନ ।୪।
ଦିନେକ ଯେ ଭିକ୍ଷା ପାଇଁ, ସାଧବ ଦୁଆରେ ମିଳିଲେ ଯାଇ ।
ଡାକନ୍ତେ କେ ଜଣେ ନ ଆସିଲେ ଭିକ୍ଷା ନେଇ ।୫।

ବିରକ୍ଷମନରେ ବୀର, ଚଳି ଆସୁଥାନ୍ତି ଆନ ଦୁଆର
ଦାସୀକୁ ରାଇଣ ସାଧବାଣୀ ବୋଲେ ଗୀର ।୬।
କିମ୍ପାଇ ଭିକ୍ଷା ନ ଦେଲୁ କହ କହ ଦାସୀ ନ କରି ଗାଳୁ
ଆମ୍ଭନାମେ ଆଜି କଳଙ୍କ ସିନା ବୋଳିଲୁ ।୭।
ତହୁଁ ଦାସୀ କହେ ବାଣୀ, କିଏ ମାଗୁଥିଲେ ନ ଥିଲି ଜାଣି
ବାଦ୍ୟ ବାଇଥିଲେ ଭିକ୍ଷା ଦେଇଥାନ୍ତି ଆଣି ।୮।
ନିକଟରେ ପର୍ଶୁରାମ ଦାସୀର ଶୁଣିଲେ ଏହି ବଚନ
ଚଳିଯାଇ ସଦାଶିବଙ୍କୁ କଲେ ସ୍ମରଣ ।୯।
ଆହେ ଦେବ ଶୂଳପାଣି, ଉମାପତି ଘେନ ମୋର ମାଗୁଣି
କାତରେ ଡାକୁଛି ଜପତପ ନାହିଁ ଜାଣି ।୧୦।
କରନ୍ତେ ବହୁ ପ୍ରାର୍ଥନା, ବାନାମ୍ଵର ହେଲେ ହରଷମନା
ଦରଶନ ଦେଇ ପୂରଣ କଲେ କାମନା ।୧୧।
ବୀରଘଣ୍ଟି ଏକ ଦେଇ, ବୋଇଲେ ଜାନୁରେ ବାନ୍ଧିଣ ତୁହି
ଭିକ୍ଷା କରୁଥିବୁ ତୁଣ୍ଡେ ରାମ ନାମ ଗାଇ ।୧୨।
ନ ଯିବି କାହା ଦୁଆର, ଗ୍ରାମପଥେ ବୁଲିଯିବୁ ତ୍ରିବାର
ଘଣ୍ଟିଶବ୍ଦ ଶୁଣି ଜନେ ହୋଇବେ ଗୋଚର ।୧୩।
ମିଳିବ ଭିକ୍ଷା ବହୁତ; ତୋତେ ଯେ ନିନ୍ଦିବ ହେବ ଅର୍କ୍ଷିତ
ବର ଦେଇ ଶୂନ୍ୟେ ଚଳିଗଲେ ପଞ୍ଚମାଥ ।୧୪।
ତହୁଁ ପର୍ଶୁରାମ ଗଲେ, ଜାନୁରେ ଘଣ୍ଟିକୁ ଆଣ୍ଟେ ବାନ୍ଧିଲେ
ଚଉଦ ଭୁବନେ ଜାନୁଘଣ୍ଟ ବୋଲାଇଲେ ।୧୫।
ଜାନୁ ଘଣ୍ଟିଆ ରହସ୍ୟ, ଠିକେ ଠିକେ ତାହା କଲି ପ୍ରକାଶ
ରମେଶ କହଇ ଶୁଣି ଜନେ ହୁଅ ତୋଷ ।୧୬।

----x----

# ସାପୁଆ ଗୀତ

କଣ୍ଠେ ଫଣୀନ୍ଦ୍ର ବେଷ୍ଟିତ, କଟୀ ତଟେ ବ୍ୟାଘ୍ରାମ୍ବର ଶୋଭିତ
ପ୍ରଭୁ ହେ ! ତ୍ରିଶୂଳ ଡମ୍ବରୁ ହସ୍ତ ତ ହେ ବାନାମ୍ବର ।୧।
ଖଣ୍ଡ ପର୍ଶୁଧର ଧର, କ୍ଷିତି ଉଦ୍ଧାରିଛ ନାଶି ଅସୁର
ପ୍ରଭୁ ହେ ! କିଞ୍ଚିତେ କରୁଣା କର ତ ହେ ବାନାମ୍ବର ।୨।
ଗଙ୍ଗାକୁ ଧାରଣ କରି, ଗଙ୍ଗାଧର ନାମ ବହିଛ ହରି
ପ୍ରଭୁ ହେ ! ଶୁଣ ମୋହର ଗୁହାରି ତ ।୩।
ଘରଣୀ ତୁମ କାଳିକା, ଘର କରିଅଛ କୈଳାସ ଶିଖା
ପ୍ରଭୁ ହେ ! ବିନାଶ କର ମୋ ଦକା ତ ।୪।
ଊର୍ଦ୍ଧ୍ୱରେତା ମହାଯୋଗୀ, ଉଜ୍ଜ୍ୱଳବଦନ ଚୀର ବୈରାଗୀ
ପ୍ରଭୁ ହେ ! ଶମଶାନ ଅଛ ଜଗି ତ ।୫।
ଚନ୍ଦ୍ରମା ଶୋଭନ ଶିରେ, ଚମ୍ପାଗୟସର ହାର ଗଳାରେ
ପ୍ରଭୁ ହେ ! ସୁଦୃଷ୍ଟି ପଡୁ ମୋ ପରେ ତ ।୬।
ଷଡ଼ାନନଙ୍କ ପିୟର, ଛଇଳମୂରତି ପାର୍ବତୀବର
ପ୍ରଭୁ ହେ ! ଛାମୁରେ ଯୋଡୁଛି କର ତ ।୭।
ଜାଙ୍ଗଳିକ ମୁଁ ଅଧମ, ଜାଣେ ନାହିଁ ମହା ମହିମା ତୁମ
ପ୍ରଭୁ ହେ ! ସର୍ପ ଧରା ମୋର କର୍ମ ତ ।୮।
ଝାଡ଼ ବନରେ ବୁଲଇ, ଝାଙ୍ଜିବରଷାକୁ ଡର ନ ଥାଇ
ପ୍ରଭୁ ହେ ! ତୁମ ନାମ ଗାଇ ଗାଇ ତ ।୯।
ନିପଟ ଅଜ୍ଞାନୀ ମୁହିଁ, ନିରତେ ଏତିକି ଅଳି କରଇ
ପ୍ରଭୁ ହେ ! ଦିନ ଯାଉ ପଦ ଧ୍ୟାୟି ତ ।୧୦।
ଟାଣପଣ ମୋର ନାଶ, ଟିକିଏ ସୁଦୟା କର ମହେଶ
ପ୍ରଭୁ ହେ ! ଟିକେ ନ ଧରିବ ଦୋଷ ତ ।୧୧।
ଠିକେ ରମେଶ କହଇ, ଠାବଦିଅ ପାଦେ ପାର୍ବତୀ ସାଇଁ
ପ୍ରଭୁ ହେ ! ଆନ କିଛି ଲୋଡ଼ା ନାହିଁ ତ ।୧୨।

----x----

# ଦଣ୍ଡକାଳୀ ବନ୍ଦନା

ଜୟ ମା' ଗ୍ରାମଦେବତୀ ତୋର ପାଦତଳେ କୋଟି ପ୍ରଣତି
ଗ୍ରାମଦେବତୀ ଲୋ ଦିଅ ବାରେ ସଦଗତି ।୧।
ପ୍ରଥମେ ବନ୍ଦେ କାଳିକା କଣ୍ଠେ ବସି ପଦ କହିବୁ ଏକା
ଜୟ କାଳିକା ଲୋ କାହିଁ ଅଛୁ ଦିଅ ଦେଖା ।୨।
ଦ୍ୱିତୀୟେ ପାର୍ବତୀଈଶ କଇଳାସ ପତି ଦେବ ମହେଶ
ଶିବଙ୍କର ହେ ! ବଜ୍ରକୋଟ ଗ୍ରାମେ ବାସ ।୩।
ତୃତୀୟେ ତେର ଭଗତା ବନ୍ଦୁଛି ଚରଣେ ରଖିଣ ମଥା
ତେର ଭଗତା ହେ ମଣି ଶବଦଟି ଦେଉଥା ।୪।
ଚତୁର୍ଥେ ଚଣ୍ଡୀ ଚାମୁଣ୍ଡା ବିଜେ ହୁଅ ଘେନି ଖର୍ପର ଖଣ୍ଡା
ଚଣ୍ଡୀ ଚାମୁଣ୍ଡା ଲୋ ଖାଉ ବଳି ଛେଳି ମେଣ୍ଢା ।୫।
ପଞ୍ଚମରେ ଗଜାନନ ବନ୍ଦନା କରୁଛି ଦେବାକୁ ଜ୍ଞାନ
ଉମାନନ୍ଦନ ହେ ପଶୁଛି ପାଦେ ଶରଣ ।୬।
ଷଷ୍ଠରେ ସପତଫଣୀ ସପ୍ତମେ ବନ୍ଦନା କରେ ସୁଜ୍ଞାନୀ
ଦୋଷ ନ ଧରିବ ଏତିକି ମୋର ଦୟିନୀ ।୭।
ଅଷ୍ଟମେ ଅଷ୍ଟ ମହେଶ ନୀଳାଚଳ ଧାମେ ଯାର ନିବାସ
ନବମେ ଯୋଗିନୀ ଦଶମରେ ଦଶଦିଶ ।୮।
ଏକାଦଶେ ଚଉବାହା ଲକ୍ଷ୍ମୀନାୟକ ହେ ହୋଇବ ସାହା
ଦ୍ୱାଦଶେ ବନ୍ଦନା କରୁଅଛି ଯୋଗମାୟା ।୯।
ତ୍ରୟୋଦଶେ ପିତାମାତା ଚତୁର୍ଦ୍ଦଶେ ବନ୍ଦୁଛି ବସୁମାତା
ପଞ୍ଚଦଶରେ ମୁଁ ବନ୍ଦୁଛି ପଞ୍ଚ ଦେବତା ।୧୦।
ଷୋଡ଼ଶେ ଗଉରୀବେତ ନଳ ଅଠାକାଠି ନିଶାଣି ନେତ
ଢୋଲ ବୀଣାକୁ ମୁଁ ବନ୍ଦୁଛି ଭକତି ଚିତ୍ତ ।୧୧।

ସପ୍ତଦଶେ ପିଞ୍ଛମୁଠି, ଅଷ୍ଟଦଶେ ବନ୍ଦେ କାମନା କୋଠି
ମଣିଆମାଆଙ୍କୁ ଊନବିଂଶ ବନ୍ଦନାଟି ।୧୨।
ବିଂଶରେ ବନ୍ଦେ ବାସୁକୀ, ବନ୍ଦୁଛି ସକଳ ଦେବାଦେବୀଙ୍କି
କହଇ ରମେଶ କ୍ଷମା ଦିଅ ଥିଲେ ବାକି ।୧୩।

----x----

## କେଳା କେଳୁଣୀ ଗୀତ

କେଳୁଣୀ-କଳା କେତେ ଜାତି କହ ଆରେ କେଳା
କଳା କେତେ ଜାତି କହ
କଳା କେତେ ଜାତି ନ କହି ପାରିଲେ
କଳାକାହ୍ନୁ କାଳିଆରେ ! ମୋ ପାଶରୁ ଦୂରେ ରହ ।୧।
କେଳା- କେଶ କଳା ନିଶ କଳା ଆହୁରି କଳା କୋକିଳ
କଜ୍ଜଳ ହାଣ୍ଡିକଳା କାଉ ପୁଣି କଳା
କେଳି ବୋଉ କୋକିଳ ଲୋ ! କଳା ପୁଣି ମେଘମାଳ ।୨।
କେଳୁଣୀ-କଳା ଏତେ ଜାତି କହିଲୁ ନାଗର
ଧଳା ଚାରି ଜାତି କହ
ଧଳା ଚାରିଜାତି ନ କହି ପାରିଲେ କଳାକାହ୍ନୁ କାଳିଆରେ !
ଭାଙ୍ଗିବି ତୋ' ପୋଡ଼ାମୁହଁ ।୩।
କେଳା- ବଗ ଧଳା ବଗୁଲି ଧଳା ଟଗର ଫୁଲଟି ଧଳା
ଆହୁରି ଧଳା ମୁଁ କହୁଛି, କେଳି ବୋଉ କୋକିଳ ଲୋ
ରାଜହଂସ କେଡ଼େ ଧଳା ।୪।
କେଳୁଣୀ-ଧଳା ଚାରି ଜାତି କହିଲୁ ନାଗର
ନାଲି ଚାରି ଜାତି କହ
ନାଲି ଚାରିଜାତି ନ କହି ପାରିଲେ କଳାକାହ୍ନୁ କାଳିଆରେ !
ସେବା କରିବାକୁ ରହ ।୫।

କେଳା- ସୁରୁଜ ନାଲି ମୁରୁଜ ନାଲି ନାଲି ସାଧବ ବୋହୂ
ଆହୁରି ନାଲି ମୁଁ ବତାଇ ଦେଉଛି, କେଳି ବୋଉ କୋକିଳ ଲୋ।
ନାଲି ଚୁଡ଼ି କରେ ନାଉ ।୬।
କେଳୁଣୀ- ନାଲି ଚାରି ଜାତି କହିଲୁ ନାଗର
ସବୁ ଚାରି ଜାତି କହ
ସବୁ ଚାରିଜାତି ନ କହି ପାରିଲେ, କଳାକାହ୍ନୁ କାଳିଆରେ !
ପୁଅ ଧରିବାକୁ ରହ ।୭।
କେଳା- କଣ୍ଠି ସବୁ ତଣ୍ଟି ସବୁ ସବୁ ଦିଶଇ ଡମ୍ବରୁ
ଆହୁରି ସବୁ ମୁଁ ବତାଇ ଦେଉଛି, କେଳି ବୋଲ କୋକିଳ ଲୋ।
କଟୀ ତୋର କେଡ଼େ ସରୁ ।୮।
କେଳୁଣୀ- ପଚାରିଲି ଯାହା କହିଗଲୁ ତାହା
ପାଇଲୁ ବହୁ ପ୍ରଶଂସା
ରମେଶ କହଇ ହର ପାଦ ଧ୍ୟାୟି
ପ୍ରୀତିରେ କାଟିବା ନିଶା ।୯।

----X----

## କଳାରୁଦ୍ରମଣିଙ୍କୁ ଚଢ଼େୟାର ସ୍ତବ

କପାଳେ ଦେଇଣ କର, କାତରେ କହଇ ଚଢ଼େୟାବୀର
କର କୃପା ମୋତେ କାଳିକା ପତି ଈଶ୍ୱର ।୧।
ଖୋଜିଲି ବନେ ଚଢ଼େଇ, ଖସି ପଳାଇଲେ ଚମକ ପାଇ
ଖାଦ୍ୟ ବସାଇବି ତୁମ୍ଭ ଆଜ୍ଞା ହେଲେ ଯାଇ ।୨।
ଗୋଟାଏ କରିଛି ଆଶା, ଗଙ୍ଗାଧର ମୋତେ ଦିଅ ଭରସା
ଗୋଡ଼ାଇ ବନରେ ପକ୍ଷୀ ବଧିବି ସହସା ।୩।
ଘାଣ୍ଟିହେଉ ଅଛି ମନ, ଘଟରୁ ଜୀବନ ଯିବ ବହନ
ଘୁଞ୍ଚାଅ ହର ହେ ମୋହର ଏହି କଷଣ ।୪।

ଆପଣ ବଡ଼ ଠାକୁର, ଆଶା ମୁଁ କରିଛି ସଦୟା କର
ଅରଣ୍ୟେ ଭ୍ରମଇ ନାମକୁ ଜପି ତୁମର ।୫।
ଚଡ଼େଇ କରିଣ ହତ, ଚଡ଼େୟା ନାମରେ ହେଲି ବିଖ୍ୟାତ
ଚାହିଁ ଦେଲେ ଶିବ ଯାଆନ୍ତା ମୋର ଦୂରିତ ।୬।
ଛଇଳମୂର୍ତ୍ତି ଈଷାନ, ଛାଡ଼ି ଯାଉଅଛି ପିଣ୍ଡରୁ ପ୍ରାଣ
ଷନାନନ ତାତ ହୁଅ କିମ୍ପା ନିଦାରୁଣ ।୭।
ଜହ୍ନକୁ ବହିଲା ଶିର, ଜଗତମାତାଙ୍କ ପ୍ରାଣ ଈଶ୍ୱର
ଜଣାଉଛି ଦୁଃଖ ଆରତ ଫେଡ଼ ମୋହର ।୮।
ଝାଡ଼ପତି ପଡି ପତି ଝଟତି, ମୋହର ଘେନ ବିନତି
ଝାଡ଼ିଦିଅ ପାପ ଡାକୁଛି କାତରେ ଅତି ।୯।
ନିଦାରୁଣ ହେଲେ ହର, ନିନ୍ଦା କି ନୋହିବ ଚଉଦପୁର
ନିଦ୍ରା ତେଜି ପ୍ରଭୁ ଗୁହାରି ବୁଝ ସତ୍ୱର ।୧୦।
ଟେକରେ ଉଡୁଛି ନେତ, ଟେକ ପଣ କହି ନୁହଁଇ ନାଥ
ଟେକ ଆସନରେ ବସିଛ ଦିବସ ରାତ୍ର ।୧୧।
ଠିକେ ମୋ କରମହୀନ, ଠିକେ ନ କରଇ ଧରମ ଧ୍ୟାନ
ଠିକେ ଦିବାନିଶି ଖଳସଙ୍ଗେ ଗଲା ଦୀନ ।୧୨।
ଡାହୁକ ମୟୂର ଶାରୀ, ଡାଳେ ମୁଁ ଦେଖିଲି ଅଛନ୍ତି ପୂରି
ଡେଇଁଣ ଚଢ଼ିଲି ନଳ ଅଠାକାଠି ଧରି ।୧୩।
ଢାଳେ ଦିଅ ଦରଶନ, ଢାଳେ ପଶୁପତି ହୁଅ ପ୍ରସନ୍ନ ।
ଢାଳେ ତୁମ୍ଭ ପାଦେ କରୁଛି ମୁହିଁ ଜଣାଣ ।୧୪।
ଅନ୍ଧକ ଦୈତ୍ୟ ବଧିଲ, ଅନ୍ତର୍ଯ୍ୟାମୀ ଧରା ଦୁଃଖ ନାଶିଲ
ଅପାର ମହିମା ଜଗତେ ପ୍ରକାଶ କଲ ।୧୫।
ତ୍ରେତୟାରେ ଦଶାନନ, ତୁମ୍ଭ ଶ୍ରୀଚରଣେ ଗଲା ଶରଣ
ତ୍ରାହିକର ମୋତେ ଉମା ପ୍ରିୟ ପଞ୍ଚାନନ ।୧୬।

ଥୟ ନ କଲେ ମୋ ଚିତ୍ତ, ଥୟେ କି ବର୍ଣ୍ଣିବି ତୁମ୍ଭ ଚରିତ
ଥକି ମ୍ ପଡ଼ିଛି ସାହାହୁଅ ଭୂତନାଥ ।୧୭।
ଦର୍ପ ବିନାଶକ ହର, ଦର୍ପକାରୀ ବାରେ କରୁଣା କର
ଦୟାର ସାଗର କିମ୍ପାଇ ହୁଅ ନିଷ୍ଠୁର ।୧୮।
ଧନ୍ଦା ମୋର ଲୋଡ଼ା ନାହିଁ, ଧନ୍ଦି ମୁଁ ହେଉଛି ପାର୍ବତୀ ସାଇଁ
ଧନ୍ଦାରେ ପଡୁଛି ଉଦ୍ଧାର କର ଗୋସାଇଁ ।୧୯।
ନାମ ମୋର ପକ୍ଷୀମରା, ନିତି ଭ୍ରମୁଥାଇ ଅରଣ୍ୟ ସାରା
ନିର୍ଭୟ ଚିତ୍ତରେ ଭଜରେ ହର ଗଉରା ।୨୦।
ପାର୍ବତୀ ପତି ଶଙ୍କର, ପାର୍ବତୀଙ୍କି ଘେନି ତୁମ୍ଭ ବିହାର
ପୂର୍ଣ୍ଣକର ଆଶ ଏତିକି ବିନତି ମୋର ।୨୧।
ଫେଡ଼ି ମୁଁ କହୁଛି ଦୁଃଖ, ଫଣୀଧର କର ନାହିଁ ନିରେଖ
ଫେଡ଼ି ନେତ୍ରେ ମୋତେ ଚାହିଁଦିଅ ପଞ୍ଚମୁଖ ।୨୨।
ବନ୍ଦନା କରୁଛି ପାଦ, ବାମଦେବ ମୋର ଫେଡ଼ ବିପଦ
ବାମାଙ୍କୁ ଘେନିଣ ଭ୍ରମୁଛ ପୁର ଚଉଦ ।୨୩।
ଭୁଜଙ୍ଗ ଭୂଷଣ ହର, ଭସ୍ମକୁ ମଣ୍ଡିଲ ସାରା ଅଙ୍ଗର
ଭାସି ଯାଉଛି ମୁଁ ଭବ ସାଗରୁ ଉଦ୍ଧର ।୨୪।
ମନମଥ ନିସୁଦନ, ମନରେ ସର୍ବଦା କରେ ଭାବନ
ମାୟା ମୋହଠାରେ କିମ୍ପାଇ କର ଈଶାନ ।୨୫।
ଯୋଗ ନିଦ୍ରା ତେଜ ହରି, ଯାହା ତୁମ ଇଚ୍ଛା କର ସେପରି
ଜଗି ରହିଛନ୍ତି ଚଉପାଶରେ ଉଗାରି ।୨୬।
ରୁଦ୍ର ହେ ପିନାକପାଣି, ରସାପତି ଘେନ ମୋର ମାଗୁଣି
ରକ୍ଷାକର ବାରେ ଡାକୁଛି ଆରତେ ପୁଣି ।୨୭।
ଲୋକନାଥ ମହେଶ୍ୱର, ଲବେ କରୁଣାରୁ ଊଣା ନକର
ଲଘୁକର ଚିନ୍ତା ଯୋଡୁଅଛି ବେନିକର ।୨୮।

ବିନାୟକ ତାତଶିବ, ବନସ୍ତରେ ବୁଲି ଜୀବନ ଯିବ
ବାରେ ଦେଖାଦେଲେ ଏ ଜୀବନ ଧନ୍ୟ ହେବ ।୨୯।
ଶଙ୍କର ହେ ତ୍ରିଲୋଚନ, ଶରଣ ମାଗୁଛି ପଦ୍ମଚରଣ.
ଶକ୍ତି ନାହିଁ ମୋର କଷଣ କର ହରଣ ।୩୦।
ଷଡ଼ାନନଙ୍କ ପିୟର, ଷଡ଼ାଷ୍ଟଭୁବନେ ମୁହିଁ ପାମର
ଷଣ୍ଢଧ୍ୱଜ୍ ମୋତେ ସଂକଟରୁ ତ୍ରାହି କର ।୩୧।
ସୁଧାକର ଧର ହର, ସ୍ତବ ଘେନା କର ଶିବଶଙ୍କର
ସେବୁଛି ଠାକୁର ବିନୟରେ ନିରନ୍ତର ।୩୨।
ହର ହର ମୋ ବିନତି, ହରି ଧ୍ୱଜାଙ୍କର ପରାଣପତି
ହର ବର ମୋତେ କର ନାହିଁ ଦୀନପତି ।୩୩।
କ୍ଷୋଭରେ ରମେଶ କହି, କ୍ଷମାକର ମୋତେ ବ୍ରହ୍ମାଣ୍ଡ ଗୋସାଇଁ
କ୍ଷମା ସାଗର ହେ ଆନଦ୍ରବ୍ୟ ଲୋଡ଼ା ନାହିଁ ।୩୪।

---X----

## ଲକ୍ଷ୍ମୀ ନାରାୟଣ କଳି

ଲକ୍ଷ୍ମୀ- କମଳା କହନ୍ତି ଇନ, କିମ୍ପାଇ ବଦନ ଦିଶେ ମଳିନ
ଜୀବେଶ ହେ ! ଉଠ ମୁଁ ଯିବି ବହନ ।୧।
ନାରାୟଣ- କ୍ଷୀରାବ୍ଧି ତନୟାବାଣୀ, ଶୁଣି ନାରାୟଣ ବୋଲନ୍ତି ପୁଣି
ବାରଣ ଯେ ! କରିଛନ୍ତି ହଳପାଣି ।୨।
ଲ- ଗରିଷ୍ଠ କି ଦୋଷ କଲି, ଦେଢ଼ଶୁରଙ୍କର ଅପ୍ରିୟ ହେଲି
ଶୁଣିବି ଯେ ! କୁହ ମୋ ଅଗ୍ରତେ ଖୋଲି ।୩।
ନା- ଘରୁ କିମ୍ପାଇ ତୁ ଗଲୁ, ଘର ବୁଡ଼ି ପାଣି ଆଣୁଏ କଲୁ
କମଳା ଲୋ ! ଚଣ୍ଡାଳ ଘରେ ପଶିଲୁ ।୪।

ଲ- ଉତ୍ତର ଶୁଣ ଠାକୁର, ଆଜ ସୁଦଶାବ୍ରତ ଗୁରୁବାର
ରହିଲି ଯେ ! ଶ୍ରୀୟା ଚଣ୍ଡାଳୁଣୀ ଘର ।୫।
ନା- ଚାଲିଯା ଆଗରୁ ତୁହି, ଜାତିକୁଳ ଆମ୍ଭ ଦେଲୁ ବୁଡ଼ାଇ
ଚଞ୍ଚଳା ଲୋ ! ତୋ ମୁଖ ଚାହିଁବି ନାହିଁ ।୬।
ଲ- ଛାର କଥାକୁ ଧରିଣ, ଛି' କାର କରିଣ କୁହ ବଚନ
ମାଧବ ହେ ! ସର୍ବେ ମୋ ପାଇଁ ସମାନ ।୭।
ନା- ଜ୍ୟେଷ୍ଠ ଭାଇଙ୍କର କଥା, ଟାଳିବାକୁ ମୋର ନାହିଁ କ୍ଷମତା
ବାହାର ଯେ ! ହୁଅ ତୁ ବରୁଣ ସୁତା ।୮।
ଲ- ଝଟତି ଯାଉଛି ମୁହିଁ, ଝାଟୁଆ ଖଣ୍ଡିଏ ରଖିବି ମୁହିଁ
ଝଗଡ଼ି ଯେ ! ହେବ ତୁମ୍ଭେ ବେନି ଭାଇ ।୯।
ନା- ନକର ଆଉ କଟାଳ, ନିଷିଦ୍ଧ ଆଜିଠୁ ବଡ଼ ଦେଉଳ
ନିର୍ଲଜ୍ଜୀ ଲୋ ! ଭୋଗ ତୋର କର୍ମଫଳ ।୧୦।
ଲ- ଟିକେ ଉପ୍ରୋଧ ନବହି, ଟାଣପଣ ତୁମ୍ଭ ଭାଙ୍ଗିବି ମୁହିଁ
ବୁଲିବ ଯେ ! ଅନ୍ନବସ୍ତ୍ର ହୀନ ହୋଇ ।୧୧।
ନା- ଠିକେ କହୁଅଛି ତୋତେ, ଠିଆ ନ ହୋଇ ତୁ ଯାଅ ତୁରିତେ
ରମେଶ ଯେ ! ଭାବିଣ କହଇ ଗୀତେ ।

---X----

## (ଶିବଙ୍କ ଆଗମନ ଗୀତ)

ଡିବି ଡିବି ଡମ୍ବରୁ, ବାଇ ହର ବିଜେ
ଅସ୍ଥି ରୁଦ୍ରାକ୍ଷର ହାର ଗଳେ ସାଜେ ।୦।
ହସ୍ତରେ ଶୋଭା ତ୍ରିଶୂଳ ଭାଙ୍ଗଖାଇ ସଦା ଭୋଳ
ତାମ୍ର କଙ୍କଣ ବାହୁଟି ବେନି ଭୁଜେ ।୧।

ବୃଷଭ ଅଟେ ବାହନ ବିଭୂତି ଅଙ୍ଗେ ମଣ୍ଡନ
କଟୀ ତଟରେ ଶାର୍ଦ୍ଦୁଳ ଚର୍ମ ରାଜେ ।୨।
କୈଳାସପତି ଶଙ୍କର ଭୋଳାନାଥ ମହେଶ୍ୱର
ଅଜ୍ଞାନ ରମେଶ ଚିତ୍ତ ପଦ୍ କଞ୍ଜେ ।୩।

---X----

## (ପାର୍ବତୀଙ୍କ ଆଗମନୀ)

ରଙ୍ଗେ ଆସନ୍ତି ଭବାନୀ, ମହାଦେବଙ୍କ ଘରଣୀ
ଶୋଭା ଦିଶଇ ବଦନ ନବ ପ୍ରଭାକର ଜିଣି ।୦।
ଗଳେ ରଙ୍ଗ ପୁଷ୍ପହାର, ନୂପୁର ସାଜେ ପୟର
ବାସ ଉପରାଣ ପାଟ ମଥାରେ ରତନମଣି ।୧।
ବାହେ କଙ୍କଣ ବାହୁଟି, ହିରକର ଶୋଭା କଟୀ
କର୍ଣ୍ଣରେ କୁଣ୍ଡଳ ବେନି ଯତିମନ ନିଏ କିଣି ।୨।
ମୁଖରେ ଫୁଟାଇ ହସ, ଆସନ୍ତି ପତିଙ୍କ ପାଶ
ବେନି ନୟନେ କଜ୍ଜ୍ୱଳ ପ୍ରଜାପତିଙ୍କ ତୁଳଣୀ ।୩।
ଦୀନ ରମେଶ୍ ବଦତି, ମହାମାୟା ପଦ୍‌ଚିନ୍ତି
ଦିଅ ବାରେ ସଦଗତି ଷଡ୍‌ାନନଙ୍କ ଜନନୀ ।୪।

---X----

## ଆଦ୍ୟ ପ୍ରାନ୍ତେ - 'କା' ଅନୁପ୍ରାସ

କାମନା ଦାୟକ ହେ ଉମା ନାୟକ
ଶରଣ ପଶୁଛି ଏକା
କାତରେ ଡାକୁଛି ମୁହିଁ ଦୀନହୀନ
ବିନାଶ କର ମୋ ଦକା ।୧।

କାତ୍ୟାୟନୀ ଉମା ଗିରିରାଜ ଜେମା
ଜୟ ଜୟ ମା କାଳିକା
କାତି ଯେ ଖର୍ପର ସାଜେ ତୋର କର
ଉଡୁଛି ଯଶ ପତାକା ।୨।
କାଶୀନାଥ ହର ଦେବ ମହେଶ୍ୱର
କର୍ଣ୍ଣରେ ଘେନ ମୋ ଡକା
କାହିଁକି କରୁଣା ମୋହଠାରେ ଊଣା
ପାପତରୁ ଛେଦିପକା ।୩।
କାମାକ୍ଷା ତାରିଣୀ ମଙ୍ଗଳକାରିଣୀ
ଚନ୍ଦ୍ରଶେଖର ସେବିକା
କାହା ପାଶେ ଯାଇ ମୋ ଦୁଃଖ କହିବି
ଦୟା ନ କଲେ ଅମ୍ବିକା ।୪।
କାଳକୂଟ ପାନ କରି ପଞ୍ଚାନନ
ହରିଲ ଧରଣୀ ଶଙ୍କା
କାମକୁ ସଂହାର କରି ବାନାମ୍ବର
କନ୍ଦର୍ପାରୀ ନାମ ଟେକା ।୫।
କାଟିଲୁ ମହିଷା ରକ୍ଷା କଲୁ ରସା
ସିଂହ ବାହିନୀ ଚଣ୍ଡିକା
କା ଆଦ୍ୟ ପ୍ରାନ୍ତରେ ରମେଶ ଭାଷଇ
ଘେନ ମୋ ପ୍ରଣତି ଏକା ।୬।

---X----

## ଆଦ୍ୟ ଯମକ - ଜଣାଣ

ହର ହର ମୋ ବିପତ୍ତି କରୁଛି ଦୀନ ଆପତ୍ତି
ଧର ଧରଜା ନାୟକ ହଜି ଯାଉଅଛି ଧୃତି ।୦।

ଭୁଜ ଭୁଜଙ୍ଗରେ ସାଜେ ଚରଣେ ବାଜେଣୀ ବାଜେ
ଦର୍ପ ଦର୍ପକ ନାଶନ ପ୍ରଭୁ ତାଣ୍ଡବ ମୂରତି ।୧।
ଭବ ଭବ ସଂହାରକ ଉମାପତି ବିରୁପାକ୍ଷ
ଦେବ ଦେବକୀ ଦର୍ଶନ ଲଭିବି ପରମଶାନ୍ତି ।୨।
ବାମ ବାମଦେବ ନୋହିଁ ସଂକଟରୁ କର ତ୍ରାହି
କାମ କାମହାରୀ ପୂର୍ଣ୍ଣ କର ମୋହର ଝଟତି ।୩।
ସଦା ସଦାନନ୍ଦ ଲୟ କରି ନୋହିଲ ସଦୟ
ପଦେ ପଦେ ଦୀନହୀନ ରମେଶ କରେ ବିନତି ।୪।

---x----

## (ରଜକ ରଜକୀ - କଳି)

ପୁ- କର୍ଣ୍ଣ ଡେରି ଶୁଣ ରସ, ରଜକ ରଜକୀ କଳି ରହସ୍ୟ
ରଜକ ଯେ ! କ୍ରୋଧରେ ମୋଡ଼ଇ ନିଶ ।୧।
ସ୍ତ୍ରୀ- ଖଟ୍‌ଲିଖିଆ ତୁ ମନ୍ଦ, ଘରେ ପଶୁ ପଶୁ ଲଗାଉ ଦ୍ୱନ୍ଦ୍ୱ
ରଜକରେ ! ଧରମକୁ ହେଲୁ ଅନ୍ଧ ।୨।
ପୁ- ଗଲୁ ବାପଘର ତୁହି, ପୋଡ଼ାମୁହିଁ ଘେନି ଆସିଲୁ କାହିଁ
ରଜକୀ ଲୋ ! ବଦନକୁ ଲାଜ ନାହିଁ ।୩।
ସ୍ତ୍ରୀ- ଘଡ଼ିଏ ତୋ ଠାରୁ ଗଲି, କର୍ଣ୍ଣରେ ଅନେକ ଗାଳି ଶୁଣିଲି
ରଜକରେ ! ଜହର ଖାଇ ନମଲି ।୪।
ପୁ- ଉଆଁସୀ ନ କଲୁ ଭିତ୍ତି, ପର ପୁରୁଷରେ କଲୁ ପୀରତି
ରଜକୀ ଲୋ ! ମୋ ପାଶେ ବୋଲାଉ ସତୀ ।୫।
ସ୍ତ୍ରୀ- ଚଣ୍ଡାଳ ତୋ ପରି ନାହିଁ, ବାପଘରେ କିଏ ପ୍ରୀତି କରଇ
ରଜକ ରେ ! କେମନ୍ତେ କହୁଛୁ ତୁହି ।୬।

ପୁ- ଛାପାଲୁଗା କିଏ ଦେଲା, ସେ ଲାଗି ମୋହର ସନ୍ଦେହ ହେଲା
ରଜକୀ ଲୋ ! ତୋ ଠାରେ କିଏ ରସିଲା ।୭।

ସ୍ତ୍ରୀ- ଜାନକୀ ରାବଣ ନେଲା, ଅଶୋକ ବନରେ ନେଇ ରଖିଲା
ରଜକ ରେ ! ସେ କି ଦୋ' ଚାରି ହୋଇଲା ।୮।

ପୁ- ଝିଣ୍ଟିକା ନାଚଇ ଡେଇଁ, ବଡ଼ ଲୋକଙ୍କୁ ତ ଉତ୍ତର ନାହିଁ
ରଜକୀ ଲୋ ! ଗରିବଙ୍କୁ ନିନ୍ଦା ହୋଇ ।୯।

ସ୍ତ୍ରୀ- ନୋହିଲେ ସୀତା ଅସତୀ, କେମନ୍ତେ ଆଣିଲେ ଶ୍ରୀ ରଘୁପତି
ରଜକ ରେ ! ସେ ପୁଣି ହୋଇଲେ ସତୀ ।୧୦।

ପୁ- ଟେକ ଥିବା ଲୋକ ପୁଣି, ଅନୀତି କରିଲେ କେ ପାରେ ଖୁଣି
ରଜକୀ ଲୋ ! ଆମ୍ଭଙ୍କୁ ଆଙ୍କଟ ପାଣି ।୧୧।

ସ୍ତ୍ରୀ- ଠିକେ ତୁ କହିଲୁ ସତ୍ୟ, ଗରିବର କିଏ ବୁଝେ ମହତ
ରଜକରେ ! ରମେଶ ଭଣଇ ଗୀତ ।୧୨।

## (ସାପୁଆ ଚଢ଼େୟା ଦ୍ୱନ୍ଦ୍ୱ), (କଂସର ଘରଣୀ ବୃତ୍ତେ)

ସାପୁଆ- ପ୍ରଥମେ ପେଶିଲି କାଳକୂଟ ନାଗ
ଭଲ କରି ଜଗ ତୁହି
ଜଗି ନ ପାରିଲେ ଚଢ଼େୟା ଭାଇରେ
ମୋତେ ଦୋଷ ଦବୁ ନାହିଁ କି ଗୋବିନ୍ଦ ହରେ ।୧।

ଚଢ଼େୟା- ଗଦ ରଖିଅଛି ହସ୍ତରେ ମୁଠାଇ
କି କରିବ କାଳକୂଟ
ନାଗାନ୍ତକ ମନ୍ତ୍ର ପଢ଼ି ଦେଲେ ଥରେ
ବୃଥା ହେବ ସବୁ ଚୋଟ କି ।୨।

ସାପୁଆ- ତା ପରେ ଅଢ଼େଇ କିଆରିଆ ତମ୍ପ
ପଠାଇଲି ଆରେ ଭାଇ

ଅଢ଼େଇ କିଆରି ଗୋଡ଼ାଇବ ତୋତେ
ଏଥିରେ ସନ୍ଦେହ ନାହିଁ କି ।୩।

ଚଢ଼େୟା- ସେଥିପାଇଁ ପରା ବାହୁରେ ମୋହର
ବାନ୍ଧିଅଛି ଡେଉଁରିଆ
ତମ୍ପ ଛାଡ଼ି ତାର ବାପ ହେଲେ ମଧ
ଦେଖିଲେ ମାରିବ ଡିଆଁ ।୪।

ସାପୁଆ- କୋପଭରେ ହୋଇ ସାପୁଆ ଛାଡ଼ଇ
ପଦ୍ମନାଗ ତତ୍‌କ୍ଷଣ
ନାଗ ଚଳିଗଲା ଚୋଟ ଯେ ମାରିଲା
ଛାଡ଼ିଲା ଚଢ଼େୟା ପ୍ରାଣ କି ।୫। (ଚଢ଼େୟା ମୃତ)

---x----

# ପକ୍ଷୀବିକା ଗୀତ

କିଏ ନେବ ପକ୍ଷୀ ଗୋ।
ଆସ ଗୋ ସହି ସଙ୍ଗାତ ପ୍ରିୟ ସଖୀ ।୦।
ପକ୍ଷୀ ମାରିବା ପାଇଁ ବନକୁ ଗଲେ ସାଇଁ
ଗ୍ରାମେ ଗ୍ରାମେ ବୁଲୁଛୁ ହୋଇ ଦୁଃଖୀ ।୧।
ରାଜବଣୀ ଗୋବରା ଶାରୀଶୁକ ଡାମରା
କୋକିଳ ଆଣିଅଛୁ କିଣ ଦେଖି ।୨।
ଡାହୁକ ଯେ ମୟୂରୀ ଯତ୍ନେ ଆଣିଛୁ ଧରି
ନଗଦ ଏ ବେପାର ନୁହେଁ ବାକି ।୩।
ଗେଣ୍ଡୁ କଜଳପାତି କିଣିନିଅ ଝଟତି
ରମେଶ ହୋଇ ଥକି ଗଲୁ ଡାକି ।୪।

---x----

# ଆଦିଶକ୍ତି ବନ୍ଦନା

ଜୟ ଜୟ ଦଣ୍ଡକାଳୀ ବ୍ରହ୍ମ ସ୍ୱରୂପିଣୀ ମାତ ବ୍ରହ୍ମ ସ୍ୱରୂପିଣୀ
ମହାପାତକ ନାଶିନୀ ଅଭୟ ଦାୟିନୀ
ଶିବଙ୍କ ବାମା, ପ୍ରଜାପତିର ଅଟୁ ଜେମା ।୧।
ଝଙ୍କଡ଼େ ତୋହର ନାମ ଅଟଇ ଶାରଳା
ଶ୍ରୀକ୍ଷେତ୍ରରେ ବୋଲାଉଛୁ ଜନନୀ ବିମଳା
ସମ୍ବଲପୁରେ, ସମଲେଶ୍ୱରୀ ହୁରି ପଡ଼େ ।୨।
ରଣପୁର ଗଡ଼େ ତୋର ନାମ ମଣିନାଗ
ପର୍ବତ ଶିଖରେ ବସି ଖାଉଅଛୁ ଭୋଗ
ମା' କାତ୍ୟାୟନୀ, ବ୍ରହ୍ମପୁରରେ ଠାକୁରାଣୀ ।୩।
ବାଙ୍କୀଗଡ଼େ ପୁଜାପାଉ ଚର୍ଚ୍ଚିକା ବୋଲାଇ
ବାଣପୁରେ ଭଗବତୀ ପଦ ଅଛୁ ବହି
ମା ମହାମାୟୀ ଯାଜପୁରରେ ବିରଜାଇ ।୪।
ରାକ୍ଷସ ଭକ୍ଷିଣ ମାତ ରଖିଲୁ ଦେବତା
ସିଂହପରେ ବିଜେକରୁ ଗଣେଶଙ୍କ ମାତା
ତୋ ବିନା ମୋର, ସାହା କେ ଅଛି ଜଗତର ।୫।
ଆସ ମାତ ଦୟାମୟୀ କଣ୍ଠ ତଟେ ବସ
ଅଦୃଶ୍ୟ ପଦମାନଙ୍କୁ କରିଦିଅ ଦୃଶ୍ୟ
କରୁଣାମୟୀ, ତୋ ଗୁଣ ପାରିବ କେ କହି ।୬।
ଜୟ ଜୟ କାଳିକା ଲୋ ତ୍ରିଶୂଳଧାରିଣୀ
ଗଳେହାର ନରମୁଣ୍ଡ ମୋ ପିଣ୍ଡ କାରେଣୀ
ଚରଣତଳେ, ଶରଣ ପଶୁଛି ନିଶ୍ଚଳେ ।୭।
ଘଣ୍ଟ ଘୋଡ଼ାଇଣ ମୋତେ ରଖ ଆଦିଶକ୍ତି
ସଂକଟ ହାରିଣୀ ଦୁର୍ଗେ ଘେନ ମୋ ଭକତି
ରମେଶ, କହି, ଦର୍ଶନ ଦିଅ ଦୟାମୟୀ ।୮।

## (ଚଢ଼େୟା ନିଧନରେ ଚଢ଼ୌଣୀଙ୍କ ରୋଦନ)

କାନ୍ତମୁଖକୁ ଚାହିଁ ରମଣୀବର
କାନ୍ଦିଣ ଲୋଟିଯାନ୍ତି ଭୂମି ଉପର ହେ କିକଲୁ ବିହି
କାହିଁକି ଏ ଜୀବନ ଅଛି ନ ଯାଇ ହେ ।୧।
ଖେଦ ସାଗରେ ନାଥ ଗଲ ଭସାଇ
ଖୋଲ ନୟନ ବାରେ ପରାଣ ସାଇଁ ହେ କ୍ଷମାସାଗର
ଖସି ପଡ଼ିଛି ଶିରେ ବଜ୍ର ଆମ୍ଭର ହେ ।୨।
ଗଲ କେଣେ ଛାଡ଼ିଣ ହେ ପ୍ରାଣନାଥ
ଗହନ ବନସ୍ତରେ କରି ଅନାଥ ହେ ଗଳାର ହାର
ଗଲା ଜୀବନ ତୁମ୍ଭ ବିନେ ଆମ୍ଭର ହେ ।୩।
ଘନକୁ ଏଥା ଏ ଯେହ୍ନେ ଚାତକ ଚାହିଁ
ଘରେ ଜନନୀ ତୁମ୍ଭ ଥିବେ ଅନାଇଁ ହେ ଘେନ ବିନତି
ଘୋର ଅରଣ୍ୟେ ସାହା ହୁଅ ଝଟତି ହେ ।୪।
ଉଠ ଶୟନ ତେଜି ଜୀବ ଜୀବନ
ଊଣା କାହିଁକି ସ୍ନେହ ଆମ୍ଭଙ୍କୁ ଧନ ହେ ଉଦ୍ଧାର କର
ଉଡ଼ି ଯାଉଛି ହଂସା ରମେଶ ଗୀର ହେ ।୫।

---X----

## ବାବାଜୀ ଗୀତ

ବନ୍ଦଇ ଶ୍ରୀ ସଦାଶିବ ପାର୍ବତୀ ରମଣ
କଇଳାସବାସୀ ହର ଡମ୍ବରୁ ଧାରଣ ।୧।
ଗଳାରେ ସର୍ପ ଶୋଭନ, ଶ୍ରୀଅଙ୍ଗେ ବିଭୂତି
ଶରଣ ପଶୁଛି ଦେବ ଫେଡ଼ି ମୋ ଦୁର୍ଗତି ।୨।

ଗରଳକୁ ପାନ କଲ ରଖିଣ ଧରଣୀ
ଯୋଗାସନେ ବସିଅଛ ଦିବସ ରଜନୀ ।୩।
ମୋରେ କୃପାକର ଆହେ ଦେବଙ୍କର ଦେବ
ବର୍ଣ୍ଣନ କରିବି ମହା ମହିମା ଯେ ତୁମ୍ଭ ।୪।
ରାମ ତାରକ ମନ୍ତ୍ରରେ ହେଲ ମୃତ୍ୟୁଞ୍ଜୟ
ତାଣ୍ଡବ ନଟନକାରୀ କପୀଙ୍କ ଆଶ୍ରୟ ।୫।
ଯୋଡ଼ି ବେନି ପାଣି ମୁହିଁ କରୁଛି ବନ୍ଦନ
ପ୍ରସନ୍ନ ହୁଅ ମହେଶ ଦେଇ ଦରଶନ ।୬।
ପ୍ରିୟା ବିଚ୍ଛେଦରେ ନାଥ ଯାଗ ଧ୍ୱଂସ କଲ
ପାଗଳ ପରାୟ ହୋଇ ଶ୍ମଶାନେ ଭ୍ରମିଲ ।୭।
ତ୍ରିପୁରାସୁରକୁ ହର କରିଛ ନିଧନ
ମଦନ ମର୍ଦ୍ଦନକାରୀ ଦଶାର୍ନ୍ଧ ବଦନ ।୮।
ବ୍ରହ୍ମକୋଟେ ବାସ କଲ ପୂର୍ବଦିଗେ ରହି
ବାଲୁଙ୍କେଶ୍ୱର ନାମରେ ଡକା ପଡୁଥାଇ ।୯।
ମଧୁସାହୁ ନାମେ ଭକ୍ତ କରିଥିଲେ ସ୍ଥାପନ
ମଧୁମୟ କର ହର ତାଙ୍କର ଜୀବନ ।୧୦।
ପାଟ ଭଗତାଙ୍କ ନାମ ଅଟେ ବାରିଧର
କାର୍ତ୍ତିକ ସୁନ୍ଦରୀ ପୁଣି ମୁଦେଇ ପ୍ରବର ।୧୧।
ତାଙ୍କ ଶ୍ରୀଚରଣେ ମୋର କୋଟି ନମସ୍କାର
ଦୟା କରିଥାନ୍ତୁ ତାଙ୍କୁ ପାର୍ବତୀଙ୍କ ବର ।୧୨।
ବହ୍ମକୋଟ ବାସୀ ସତେ କେଡ଼େ ଭାଗବ୍ୟନ୍ତ
ଝାମୁଯାତ୍ରା କରି ସେବୁଥାନ୍ତି ଗୌରୀକାନ୍ତ ।୧୩।
ଜପତପ ଧ୍ୟାନ ଜ୍ଞାନ ନାହିଁ କିଛି ମୋର
ହର ରଣେ ଆଶ୍ରିତ ରମେଶ ପାମର ।୧୪।

---X----

## ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକ ସବୁ ସରସ କାଗଜରେ ସୁନ୍ଦର ଛାପା ହୋଇ ବିକ୍ରୟ ନିମିତ୍ତ ଗଚ୍ଛିତ ଅଛି । କ୍ରୟ କରିବା ପାଇଁ ଆପଣଙ୍କ ନିକଟସ୍ଥ ପୁସ୍ତକ ବ୍ୟବସାୟୀଙ୍କ ସହିତ ଯୋଗାଯୋଗ କରନ୍ତୁ ।

---

ବୃହତ ସ୍ତୁତି ମଞ୍ଜରୀ, ଯାହା ଚାହିଁବେ ତାହା ପାଇବେ, ଶ୍ରୀମଦ୍ ଈଶ୍ୱର ଗୀତା, ଦୀନକୃଷ୍ଣ ପଦ୍ୟାବଳୀ, କାଳିଦାସ ଗ୍ରନ୍ଥାବଳୀ, ଶିଶୁ ବେଦ, ଶିବ ସ୍ତବାଞ୍ଜଳିଃ, ଭକ୍ତି ତରଙ୍ଗ ଗନ୍ଧମାଳା, ସବ୍‌କା ମାଲିକ ଏକ, ସାଇ ସତ୍‌ଚରିତ, ଯୁଗେ ଯୁଗେ ମହାପୁରୁଷଙ୍କ ମହତ ଉପଦେଶ ।

**ପ୍ରକାଶକ :**




**ଧର୍ମଗ୍ରନ୍ଥ ଷ୍ଟୋର** ™

ଅଲିଶାବଜାର, କଟକ- ୨ ଫୋନ୍ ନଂ- ୨୫୦୮୨୯୬

website : www.dharmagranthastore.com.